# କୃଷ୍ଣଚନ୍ଦ୍ରପୁର ଇତିହାସ



( ମା ଭୁଆସୁଣୀ )

ଶ୍ରୀ କୃଷ୍ଣମୋହନ ଦାସ

ଶ୍ରୀମତୀ ସ୍ମୃତିଲତା ଷଡ଼ଙ୍ଗୀ
ପ୍ରକାଶିକା





ଶ୍ରୀ ତୁଷାରକାନ୍ତ ମହାପାତ୍ର
ସତ୍ତ୍ୱାଧିକାରୀ

# କୃଷ୍ଣଚନ୍ଦ୍ରପୁର ଇତିହାସ

## ଏରସମା ପଞ୍ଚାୟତ ସମିତ

କଟକ

ଲେଖକ—

ଶ୍ରୀ କୃଷ୍ଣମୋହନ ଦାସ

ପ୍ରଧାନ ଶିକ୍ଷକ

କୃଷ୍ଣଚନ୍ଦ୍ରପୁର ଉ: ପ୍ରା: ସ୍କୁଲ

କଟକ

ମୂଲ୍ୟ — ଦୁଇ ଟଙ୍କା

ପ୍ରକାଶିକା—
**ଶ୍ରୀମତୀ ଚନ୍ଦ୍ରଲତା ଷଡଙ୍ଗୀ**
ଝାଞ୍ଜିରିମଙ୍ଗଳା, କଟକ

ସ୍ୱତ୍ୱାଧିକାରୀ—
**ଶ୍ରୀ ତୁଷାରକାନ୍ତ ମହାପାତ୍ର**

ମୁଦ୍ରାକର—
**ଶ୍ରୀ ପ୍ରମଥ ନାଥ ଜେନା**
ଜଗନ୍ନାଥ ପ୍ରିଣ୍ଟିଂ ପ୍ରେସ
ଝାଞ୍ଜିରିମଙ୍ଗଳା
କଟକ—୯

ପ୍ରଥମ ପ୍ରକାଶ—୧୯୭୮

ପ୍ରାପ୍ତିସ୍ଥାନ—
**ଶ୍ରୀ ତୁଷାରକାନ୍ତ ମହାପାତ୍ର**
କୃଷ୍ଣଚନ୍ଦ୍ରପୁର
ପୋ: ଅ:-ନମୋଲ, ଭାୟା-ତିରଣ
ଜି:-କଟକ

# ଉପହାର ପତ୍ର

ଏହି 'କୃଷ୍ଣଚନ୍ଦ୍ରପୁର ଇତିହାସ' ପୁସ୍ତକଟି

ଶ୍ରୀଯୁକ୍ତ/ଶ୍ରୀମତୀ ______________________________

______________________________ ଙ୍କୁ

ଉପହାର ସ୍ୱରୂପ ପ୍ରଦତ୍ତ ହେଲା

ଆପଣଙ୍କର

ତା।..........

# ମୁଖବନ୍ଧ

ମୁଁ ୧୯୪୩ ଖ୍ରୀଷ୍ଟାବ୍ଦରେ ଏହି "କୃଷ୍ଣଚନ୍ଦ୍ରପୁର" ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ରୂପେ ନିଯୁକ୍ତ ପାଇଥିଲି । ୧୯୦୯ ଖ୍ରୀଷ୍ଟାବ୍ଦରୁ ଏହି ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଏହାର ଇତିହାସ ଲିଖିତ ହୋଇ ନ ଥିଲା । ମୁଁ ଗ୍ରାମଟିର ପ୍ରତିଷ୍ଠା ସମ୍ପର୍କୀୟ ତଥ୍ୟ ଅବଗତ ହେବା ପାଇଁ ଗ୍ରାମର ପୁରୁଖା, ଉଚ୍ଚ ଶିକ୍ଷିତ ତଥା ପ୍ରବୀଣ ବ୍ୟକ୍ତିମାନଙ୍କର ସହାୟତା ନେଉଥିଲି । ଏ ସମ୍ପର୍କରେ ଶ୍ରୀ ବାଞ୍ଛାନିଧି ମହାପାତ୍ର, ଶ୍ରୀ ବାଳକୃଷ୍ଣ ମହାପାତ୍ର, ଶ୍ରୀ ବ୍ରଜବନ୍ଧୁ ମହାପାତ୍ର, ଶ୍ରୀ ଈଶ୍ୱର ମହାପାତ୍ର ଓ ଶ୍ରୀ ବିନୋଦ ସ୍ୱାଇଁ ପ୍ରମୁଖ ସମ୍ମାନୀୟ ବୃଦ୍ଧ ତଥା ବହୁଦର୍ଶୀ ବ୍ୟକ୍ତିମାନଙ୍କ ଠାରୁ ଯେଉଁସବୁ କୌତୁହଳପ୍ରଦ ତଥ୍ୟ ଓ କିମ୍ବଦନ୍ତୀ ଶୁଣିବାକୁ ପାଇଲି, ସେ ସବୁ ମୋ ଭିତରେ ପ୍ରବଳ ଅନୁସନ୍ଧିତ୍ସା ସୃଷ୍ଟି କରିଥିଲା । ଫଳରେ ଏହି ଗ୍ରାମ ଓ ଆଖ ପାଖ ଅଞ୍ଚଳରେ ସାଧ୍ୟମତେ ଅନୁସନ୍ଧାନ ଚଳାଇବା ପରେ ଗ୍ରାମର ନିର୍ଭୁଲ ଐତିହାସିକ ବିବରଣୀ ବର୍ଣ୍ଣନା କରିଅଛି ।

ଏହି ଗ୍ରାମ ଇତିହାସ ସଂଶ୍ଳିଷ୍ଟ ଘଟଣାବଳୀର ବର୍ଣ୍ଣନା ଦେବାକୁ ଯାଇ ଏ ସବୁକୁ ପରିଷ୍ଫୁଟ ଓ ସାଧାରଣ ବୋଧଗମ୍ୟ କରିବା ଉଦ୍ଦେଶ୍ୟରେ ଆବଶ୍ୟକ ସ୍ଥଳେ ଉତ୍କଳ ତଥା ଭାରତର ତତ୍‌ସଂପୃକ୍ତ କେତେକ ବିଷୟର ସଂକ୍ଷିପ୍ତ ବର୍ଣ୍ଣନା କରାଯାଇଅଛି ।

ଭାରତର ଐତିହ୍ୟ ଧର୍ମଭିତ୍ତିକ ଓ ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରୀୟ ଇତିହାସ ବ୍ୟକ୍ତିକୈନ୍ଦ୍ରିକ । ସୁତରାଂ ଆଧ୍ୟାତ୍ମିକତାକୁ ବାଦ ଦେଇ ଭାରତର କୌଣସି ନା କୌଣସି ଅଞ୍ଚଳର ଇତିହାସ ପ୍ରଣୟନ କରାଯାଇ ପାରେ ନା । ଏଣୁ ଯେ କୌଣସି ଗ୍ରାମ ଐତିହ୍ୟକୁ କେନ୍ଦ୍ର କରି ଏ ବିରାଟ ଉପମହାଦେଶର ଇତିହାସ ସଂକଳନ କରାଯାଇ ପାରେ । ଏହି ପରିପ୍ରେକ୍ଷୀରେ ଏ ଗ୍ରାମ ଇତିହାସ ରଚିତ ହୋଇଅଛି । ଏହା ପାଠକ ବନ୍ଧୁମାନଙ୍କର ସନ୍ତୋଷବିଧାନ କରି ପାରିଲେ ମୋର ଶ୍ରମ ସାର୍ଥକ ହେବ ।

ବିନୀତ ଲେଖକ

**ଶ୍ରୀ କୃଷ୍ଣମୋହନ ଦାସ**

# ଧନ୍ୟବାଦାର୍ପଣ

ମୋର ସ୍ନେହାସ୍ପଦା ଧର୍ମଭଗ୍ନୀ ଶ୍ରଦ୍ଧେୟା କନକଲତାର ଜ୍ୟେଷ୍ଠା କନ୍ୟା ତଥା 'ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ' ରଞ୍ଜନ ରଶ୍ମି ବିଭାଗର ବିଶେଷଜ୍ଞ ଡାକ୍ତର ଶ୍ରୀ ଭଞ୍ଜକିଶୋର ଷଡ଼ଙ୍ଗୀ ଆସିଷ୍ଟାଣ୍ଟ ପ୍ରଫେସରଙ୍କର ସହଧର୍ମିଣୀ ଶ୍ରଦ୍ଧେୟା ଋତୁଲତା ଷଡ଼ଙ୍ଗୀ ଓ ଏହାଙ୍କର କନିଷ୍ଠ ସହୋଦର ଶ୍ରୀମାନ୍ ତୁଷାରକାନ୍ତ ମହାପାତ୍ର ସ୍ୱେଚ୍ଛାକୃତଭାବେ ଏହି ପୁସ୍ତିକା ପ୍ରକାଶନର ବ୍ୟୟ ବହନ କରିଥିବାରୁ ମୁଁ ଈଶ୍ୱରଙ୍କ ନିକଟରେ ଏମାନଙ୍କର ସର୍ବାଙ୍ଗୀନ ମଙ୍ଗଳ କାମନା କରି ଆନ୍ତରିକ ଆଶୀର୍ବାଦମୂଳକ ଧନ୍ୟବାଦ ଅର୍ପଣ କରୁଅଛି ।

**ଲେଖକ**

# ପ୍ରାକ୍ କଥନ

'କୃଷ୍ଣଚନ୍ଦ୍ରପୁର ଇତିହାସ'ର ଲେଖକ ଶ୍ରୀ କୃଷ୍ଣମୋହନ ଦାସ ମୋର ଅତି ଜଣାଶୁଣା । ତାଙ୍କର ଗ୍ରାମ ଇତିହାସର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ବିଭିନ୍ନ କମ୍ବଦନ୍ତୀ ସମ୍ବଳିତ ବିଷୟବସ୍ତୁର ଅବତାରଣା ମୋତେ ମୁଗ୍ଧ କରିଛି । ତାଙ୍କର ସରଳ ବ୍ୟବହାର, ଅମାୟିକ ତଥା ଅକପଟ କର୍ତ୍ତବ୍ୟପରାୟଣତା ସମସ୍ତଙ୍କର ଅନୁକରଣୀୟ ହେଉ ।

ଏପରି ଏକ ଗ୍ରାମ ଇତିହାସ ଲେଖାର ପ୍ରଚେଷ୍ଟା ଯେ, ସମଗ୍ର ଓଡ଼ିଆ ଜାତି ପକ୍ଷରେ ଶୁଭଙ୍କର ଏଥିରେ ସନ୍ଦେହର ଅବକାଶ ନାହିଁ । ଖାଲି କୃଷ୍ଣଚନ୍ଦ୍ରପୁର ଗ୍ରାମବାସୀ ନୁହେଁ, ଓଡ଼ିଶା ପୁରପଲ୍ଲୀର ସମସ୍ତ ଅଧିବାସୀ ଏଥିରୁ ଯଥେଷ୍ଟ ବିଷୟବସ୍ତୁ ଆହରଣ କରିପାରିବାର ଅବକାଶ ରହିଛି ।

ବହିଟିର ସରଳ ନିରାଡ଼ମ୍ବର ରଚନା ଶୈଳୀ, ମନ ମୁଗ୍ଧକର ଭାଷା ତଥା ବର୍ଣ୍ଣନାର ପରିପାଟୀ ସମସ୍ତ ପାଠକ ବୃନ୍ଦଙ୍କୁ ଆନନ୍ଦ ଯୋଗାଇବାରେ ସକ୍ଷମ ହେବ ।

**ଶ୍ରୀ ଶୁକଦେବ ମହାପାତ୍ର**
ଅବସର ପ୍ରାପ୍ତ ଜିଲ୍ଲା ଜଜ୍
କୃଷ୍ଣଚନ୍ଦ୍ରପୁର

# ଆଶୀର୍ବାଦ ଭିକ୍ଷା

ମୋର ପରମ ପୂଜ୍ୟ ଗୁରୁଦେବଙ୍କ ଦ୍ୱାରା ଲିଖିତ 'କୃଷ୍ଣଚନ୍ଦ୍ର ପୁର ଇତିହାସ' ପାଣ୍ଡୁଲିପିଟି ଆମୂଳଚୂଳ ପାଠ କରି ମୁଁ ଆନନ୍ଦ ବିଭୋର ହୋଇ ପଡ଼ିଲି । ଗୋଟିଏ କ୍ଷୁଦ୍ର ଗ୍ରାମର ଇତିହାସ ବର୍ଣ୍ଣନା କରିବାକୁ ଯାଇ ଘଟଣାବଳୀ ସଂଶ୍ଳିଷ୍ଟ ଓଡ଼ିଶା ତଥା ଭାରତ ଇତିହାସର ଯେଉଁ ତଥ୍ୟ ମୂଳକ ବର୍ଣ୍ଣନା ସେ ଉପସ୍ଥାପିତ କରିଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ । ଐତିହାସିକ ତଥ୍ୟର ଅବତାରଣା ପ୍ରସଂଗରେ ମହାମାନବୀୟ ଧର୍ମ ଓ ସଂସ୍କୃତି ବିଷୟରେ ମଧ୍ୟ ଗଭୀର ଆଲୋଚନା କରିଛନ୍ତି । ଏହା ଜଣେ ଦକ୍ଷ ଶିକ୍ଷକଙ୍କର ଗବେଷଣାତ୍ମକ ପ୍ରତିଭାର ପରିଚୟ ମାତ୍ର ।

ଯେଉଁ ବିଷୟ ବସ୍ତୁ ଉପରେ ଏହି ପୁସ୍ତକଟି ଆଧାରିତ ତାହା ଆବାଳ ବୃଦ୍ଧ ବନିତା ସମସ୍ତଙ୍କ ପାଇଁ ଏକ ଶିକ୍ଷଣୀୟ ବିଷୟବସ୍ତୁ ହୋଇ ରହିବ ଏବଂ ସମସ୍ତଙ୍କଠାରେ ଆଦୃତ ହେବ ବୋଲି ମୁଁ ଆଶା କରେ ।

ଈଶ୍ୱରଙ୍କଠାରେ ତାଙ୍କର ଦୀର୍ଘ ଜୀବନ କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଆଶୀବାଦ ଭିକ୍ଷା କରୁଛି ।

ମଙ୍ଗଳାବାଗ
କଟକ ୧୨।୩।୯୮

**ଶ୍ରୀ ଅଶୋକ କୁମାର ମହାପାତ୍ର**

# କୃଷ୍ଣଚନ୍ଦ୍ରପୁର ଇତିହାସ

ମାନବ ଜାତିର ସଭ୍ୟତା, ଭୌଗୋଳିକ ସ୍ଥିତି ଓ ଐତିହାସିକ କ୍ରମ ବିକାଶଶୀଳ ଘଟଣାବଳୀର ପ୍ରବହମାନ ଧାରା ସୂତ୍ରରେ ନିୟତ ପ୍ରଭାବିତ । କେଉଁ ଅଜ୍ଞାନ ଆଦିମ ଯୁଗରୁ, ଭୌଗୋଳିକ ଅନୁକୂଳତାର ସୁଯୋଗ ଗ୍ରହଣ କରି ଏବଂ ପ୍ରତିକୂଳତା ବିରୁଦ୍ଧରେ ଜୀବନ ସଂଗ୍ରାମ ଚଳାଇ ମନୁଷ୍ୟ ତାର ଖାଦ୍ୟପେୟ ପୋଷାକ ପରିଚ୍ଛଦ ଏବଂ ବ୍ୟବହାରିକ ରୀତି ନୀତିଗୁଡ଼ିକୁ, ସୁଶୃଙ୍ଖଳିତ କରି, କାଳକ୍ରମେ ସାମାଜିକତାରେ ପରିଣତ କରିଛି । ଏହାହିଁ ତାର ଯୁଗାନୁଗତିକ ସଭ୍ୟତାର ଅଭିବ୍ୟକ୍ତି ।

ଆଧୁନିକ ବିଶ୍ୱ ମାନବ ସମାଜରେ ପ୍ରଚଳିତ ବିଭିନ୍ନ ଧର୍ମମତ ଯେ, ଅନେକାଂଶରେ ଏହି ଭୌଗୋଳିକ ପରିବେଶ ପ୍ରସୂତ, ଏହା ଅସ୍ୱୀକାର କରିଯାଇ ନ ପାରେ । ସୁତରାଂ ବିଶ୍ୱର ବିଭିନ୍ନ ପ୍ରାନ୍ତୀୟ ମାନବ ଗୋଷ୍ଠୀ, ଭିନ୍ନ ଭିନ୍ନ ସଂସ୍କୃତିର ଜାତି ରୂପେ ପରିଚିତ ହେବା ମୂଳରେ; ତତ୍ରତ୍ୟ ଭୌଗୋଳିକ ପରିବେଶ ହିଁ ମୁଖ୍ୟ କାରଣ ଅଟେ ।

ପର୍ଯ୍ୟାଲୋଚନାରୁ ସ୍ୱତଃ ପ୍ରମାଣିତ ହୁଏ ଯେ, ଏକ ସୁସଂହତ ଜାତି ଗଢ଼ିବା ଦିଗରେ, ଭୌଗୋଳିକ ସ୍ଥିତି ଯେଉଁ ପରିମାଣରେ

ଅନ୍ତବସ୍ତୁ ହୁଏ, ବିଭିନ୍ନ ଜାତିର ଇତିବୃତ୍ତି; ବିଶ୍ୱ ସଂହତି ପ୍ରତିଷ୍ଠା କ୍ଷେତ୍ରରେ, ତତୋଧିକ ପରିମାଣରେ ଜାତିକୁ ଅଦମ୍ୟ ପ୍ରେରଣା ଯୋଗାଇ, ସକ୍ରିୟ ସହାୟତା କରିଥାଏ । ମନୁଷ୍ୟ ଜୀବହିଁ କେବଳ ପ୍ରଗତି ଧର୍ମୀ । ଆଜକୁ ସହସ୍ର ସହସ୍ର ବର୍ଷ ପୂର୍ବେ, ବାୟୁ ଚଢ଼େଇର କୁଳାୟ ନିର୍ମାଣ ପଦ୍ଧତି ଯେଉଁ ପ୍ରକାର ଥିଲା; ଆଜି ମଧ୍ୟ ସେହିପରି ଅପରିବର୍ତ୍ତିତ ରହିଛି । ମାତ୍ର ମାନବ ସର୍ବଦା ଅତୀତକୁ ଅନୁଶୀଳନ କରି ନିର୍ଭୁଲ ତଥା ନିର୍ଦୋଷ ମାର୍ଗ ଅବଲମ୍ବନରେ ନିତ୍ୟ ନୂତନ ସୃଜନ କୌଶଳରେ ବ୍ୟାପୃତ ରହିଛି । ଇତିହାସର ପର୍ଯ୍ୟାପ୍ତିକ ଅନୁଭୂତି କେବଳ କ୍ଷୁଦ୍ର ଗୋଷ୍ଠୀଭୁକ୍ତ ଗହ୍ୱର ବାସୀ ଉଲଗ୍ନ ଆଦିମ ମାନବକୁ ଆଜିର ମହାକାଶଗୃଷ୍ଟ ମହା ମାନବ ଜାତି ରୂପେ ଗଢ଼ିବାକୁ ସମର୍ଥ ହୋଇନାହିଁ; ପରନ୍ତୁ ପୃଥିବୀର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ତାହାକୁ କାଢ଼ି ନେଇ ଗ୍ରହାନ୍ତର ଜୀବ ଜଗତ ସହ ସମ୍ବନ୍ଧ ସ୍ଥାପନ ନିମିତ୍ତ ସାମର୍ଥ୍ୟ ଯୋଗାଇଛି ।

ନେପୋଲିୟନ, ଆଲେକ୍‌ଜାଣ୍ଡାର, ଚେଙ୍ଗିଜ୍ ଖାଁ, ତୈମୁରଲଙ୍ଗ ଓ ହିଟଲର ପ୍ରମୁଖ ଏକଚ୍ଛତ୍ରବାଦୀ ତଥା ସାମ୍ରାଜ୍ୟବାଦୀ ମାନଙ୍କୁ ଘୃଣା କରିବା ଏବଂ ବୁଦ୍ଧ, ଯୀଶୁ, ମହମ୍ମଦ ଓ ମହାତ୍ମା ଗାନ୍ଧୀ ପ୍ରମୁଖ ମହାନ୍ ପୁରୁଷ ବର୍ଗଙ୍କୁ ଆନ୍ତରିକ ସମ୍ମାନ ପ୍ରଦର୍ଶନ ପୂର୍ବକ ସେମାନଙ୍କର ପ୍ରଦର୍ଶିତ ମାର୍ଗାନୁସରଣ ପାଇଁ ଇତିହାସ ମାନବ ଜାତିକୁ ନୈତିକ ଶିକ୍ଷା ଦେଇଛି । ବିଂଶ ଶତାବ୍ଦୀର ଇତିହାସ, ବ୍ୟକ୍ତିତାନ୍ତ୍ରିକତା, ଧର୍ମଗତ ରକ୍ଷଣଶୀଳତା, ଏପରିକି ଏକ ଦେଶୀୟ ପ୍ରୀତି ପ୍ରଭୃତି ସଂକୀର୍ଣ୍ଣତାକୁ ତାଚ୍ଛଲ୍ୟ ଦୃଷ୍ଟିରେ ଉପହାସ କରୁଛି ।

ସାମ୍ପ୍ରତିକ ଯୁଗୋପଯୋଗୀ ଦୃଷ୍ଟିଭଙ୍ଗି ନେଇ ବିଶ୍ୱର

ଚିନ୍ତାଶୀଳ ଐତିହାସିକଗଣ ନିଜ ନିଜର ଜାତି ଇତିହାସରେ ଏପ୍ରକାର ସଂସ୍କାରଣ ଆଣିବା ଉଚିତ, ଯାହା "ବସୁଧୈବ କୁଟୁମ୍ବ-କମ୍" ଏହି ବିଶ୍ୱପ୍ରେମାତ୍ମକ ମହା ବାଣୀର ସାର୍ଥକତା ସମ୍ପାଦନ ନିମିତ୍ତ ଚିରକାଳ ବିଶ୍ୱବାସୀଙ୍କୁ ନିର୍ମଳ ପ୍ରେରଣା ଯୋଗାଉଥିବ ।

କୌଣସି ମହାପୁରୁଷଙ୍କର ଜୀବନ ଚରିତ, ଜାତି କିମ୍ବା ଦେଶର ଇତିବୃତ୍ତି; ବ୍ୟକ୍ତିଗତ ଚରିତ୍ର ଗଠନ ଓ ସାମାଜିକ ସଂସ୍କାର ବିଧାନ କ୍ଷେତ୍ରରେ ବିଶେଷ ସହାୟକ ହୋଇଥାଏ ।

ଅତୀତ ଯୁଗମାନଙ୍କରୁ ବହୁ ମନୀଷୀଙ୍କର ଆଦର୍ଶ ଜୀବନ ଚରିତ ଏବଂ ସଂସ୍କାରକ, ସାହିତ୍ୟିକ, ବୈଜ୍ଞାନିକ, ପରିବ୍ରାଜକ ଓ ଧର୍ମ ପ୍ରଚାରକମାନଙ୍କ ଦ୍ୱାରା ରଚିତ ବିବିଧ ଜ୍ଞାନ-ବିଜ୍ଞାନ ସମ୍ବଳିତ ଗ୍ରନ୍ଥାବଳୀ ବିଶ୍ୱ ସଭ୍ୟତାକୁ ଯେପରି ପରିପୁଷ୍ଟ ତଥା ପରିମାର୍ଜିତ କରିଛି ସେହିପରି ବିଭିନ୍ନ ଯୁଗର ବିବିଧ ସୂଚକ ପରିମାପକ ସ୍ତମ୍ଭ ରୂପେ ବିଶ୍ୱ ଇତିହାସରେ ପ୍ରତିଷ୍ଠା ଲାଭ କରିଛି । ଇତିହାସ ଯେଉଁ ଜାତିର ବା ପୃଥିବୀର ଯେ କୌଣସି ଅଞ୍ଚଳ ବିଶେଷର ହେଉ ନା କାହିଁକି ତାହାର ଆଦର୍ଶବାଦ, ପ୍ରତ୍ୟେକ ଜାତିର ପ୍ରତ୍ୟେକ ବ୍ୟକ୍ତିଙ୍କ ପକ୍ଷେ ଶିକ୍ଷଣୀୟ ତଥା ସମ୍ମାନୀୟ । ଏହି ପରି-ପ୍ରେକ୍ଷୀରେ ବିରାଟ ଭୂଗୋଳକ ସ୍ଥିତ କୌଣସି ଏକ କ୍ଷୁଦ୍ରାତିକ୍ଷୁଦ୍ର ଜନପଦ ବା ଗ୍ରାମର ଇତିହାସକୁ ବିଶ୍ୱ ଇତିହାସ ଗ୍ରନ୍ଥର ଏକ ଅନୁଚ୍ଛେଦ ରୂପେ ଗ୍ରହଣ କରି ନିଆଯାଇ ପାରେ ।

ପୁରାତନ ରାଜନୈତିକ ଭାରତର ସାତ ଲକ୍ଷ କ୍ଷୁଦ୍ର ଓ ବୃହତ୍ ଗ୍ରାମମାନଙ୍କ ମଧ୍ୟରୁ ପୁଣ୍ୟଭୂମି ଉତ୍କଳ ରାଜ୍ୟର ବଙ୍ଗୋପ-ସାଗର ଉପକୂଳବର୍ତ୍ତୀ "କୃଷ୍ଣଚନ୍ଦ୍ରପୁର" ଏକ କ୍ଷୁଦ୍ର ଗ୍ରାମ ।

ଏହି ଗ୍ରାମଟିର ପ୍ରତିଷ୍ଠା ସମ୍ପର୍କରେ ସ୍ଥାନୀୟ ଗୌରବମୟ କିମ୍ବଦନ୍ତୀ ଅବଲମ୍ବନରେ ଏହି କ୍ଷୁଦ୍ର ପୁସ୍ତିକାରେ ଏହି ଗ୍ରାମଟିର ଇତିହାସ ଲିଖିତ ହୋଇଛି ।

ସପ୍ତଦଶ ଶତାବ୍ଦୀର କଥା । ଓଡ଼ିଶାରେ ମରହଟ୍ଟା ଶାସନର ଅବଶାନ କାଳୀନ ଉତ୍ପୀଡ଼ନ ଚାଲିଥାଏ । ବୀର ଓଡ଼ିଆ ଜାତି ଶତାଧିକ କ୍ଷୁଦ୍ରାତିକ୍ଷୁଦ୍ର, ସ୍ୱାଧୀନଚେତା ସାମନ୍ତ ରାଜାଙ୍କ ଶାସିତ କ୍ଷୁଦ୍ର ରାଜ୍ୟଖଣ୍ଡମାନଙ୍କର ପ୍ରଜା ରୂପେ ବାସ କରି, ପିଞ୍ଜରବଦ୍ଧ ସିଂହ ସଦୃଶ ଦେଶମାତୃକାର ମୁକ୍ତି ପ୍ରତୀକ୍ଷାରେ କାଳାତିପାତ କରୁଥାନ୍ତି । ସେହିସବୁ କ୍ଷୁଦ୍ର ରାଜ୍ୟମାନଙ୍କ ମଧ୍ୟରୁ କେତେକ ରାଜ୍ୟ ଆୟତନରେ ଏତେ କ୍ଷୁଦ୍ର ଯେ ତାହା ଆଜି କାଲିର ଥାନା ଆୟତନରୁ ମଧ୍ୟ, ଯଥେଷ୍ଟ ନ୍ୟୁନ ହେବ ।

ସେହି ସମୟରେ ଓଡ଼ିଶାର ମଧ୍ୟ ଉପକୂଳବର୍ତ୍ତୀ, କୁଜଙ୍ଗ, ହରିଶପୁର, ମରିଚପୁର, ଗଡ଼ବଣ୍ଡୁପୁର ପ୍ରଭୃତି କ୍ଷୁଦ୍ର ରାଜ୍ୟ ଗୁଡ଼ିକ ଏହାର ପ୍ରକୃଷ୍ଟ ପ୍ରମାଣ ଅଟେ । ଆଶ୍ଚର୍ଯ୍ୟର କଥା ଯେ, ଏହି ଅଞ୍ଚଳମାନଙ୍କରେ ଏକ ଏକ ଶାସକ ବଂଶ ପରମ୍ପରା କ୍ରମେ ରାଜା ନାମରେ ଅଭିହିତ ଥାଇ, ରାଜ୍ୟ ନାମରେ ନାମିତ ତଥାକଥିତ ଅଞ୍ଚଳ ଗୁଡ଼ିକର ସାର୍ବଭୌମ କ୍ଷମତାସମ୍ପନ୍ନ ରାଜା ରୂପେ ସୁପ୍ରତିଷ୍ଠିତ ଥିଲେ ।

ଉପକୂଳବର୍ତ୍ତୀ ଉଲ୍ଲିଖିତ କ୍ଷୁଦ୍ରତମ ରାଜ୍ୟମାନଙ୍କ ମଧ୍ୟରେ କୁଜଙ୍ଗ ସର୍ବାପେକ୍ଷା ବୃହତ୍ତମ ଥିଲା । ଏହାର ଉତ୍ତରରେ ଆଜିକାଲିର ପାଟକୁରା ଥାନାର ପୂର୍ବାଂଶ, ମହାକାଳପଡ଼ା ଥାନାର ଦକ୍ଷିଣାଂଶ, ପୂର୍ବରେ ବଙ୍ଗୋପସାଗର ବେଳା ସ୍ପର୍ଶୀ ବିସ୍ତୀର୍ଣ୍ଣ

ପର୍ଯ୍ୟନ୍ତ ଜଙ୍ଗଲାଞ୍ଚଳ ଦକ୍ଷିଣରେ ଗଡ଼ ହରସପୁର ଓ ମରିଚପୁର ଏବଂ ପଶ୍ଚିମରେ ଉତ୍କଳ ପ୍ରସିଦ୍ଧ ଶ୍ରୀ ଶାରଳା ଠାକୁରାଣୀଙ୍କ ପୀଠ ସ୍ଥଳୀ କନକପୁର ପ୍ରଭୃତି ଅଞ୍ଚଳକୁ ନେଇ ଅବସ୍ଥିତ ଥିଲା । ପରବର୍ତ୍ତୀ କାଳରେ ରାଜାଙ୍କ ଶାସିତ ଏହି ଅଞ୍ଚଳକୁ ରାଜ୍ୟ କୁହା ନଯାଇ କିଲ୍ଲା କୁହା ଯାଉଥିଲା । ତଥାକଥିତ ଏହି କୁଜଙ୍ଗ କିଲ୍ଲାକୁ ତତ୍କାଳୀନ ପ୍ରଶାସନିକ ସୁବିଧା ଦୃଷ୍ଟିରୁ କେତେଗୋଟି ବିଭାଗରେ ବିଭକ୍ତ କରାଯାଇଥିଲା । ଏହି ବିଭାଗ ଗୁଡିକ ଆଉଡ୍ଡା ନାମରେ ନାମିତ ଥିଲା । ପ୍ରତ୍ୟେକ ଆଉଡ୍ଡାରେ ଉଚ୍ଚ କ୍ଷମତା ପ୍ରାପ୍ତ ଅଧିକାରୀ ମାନେ ଆଉଡ୍ଡାର ନିର୍ଦ୍ଦିଷ୍ଟ ଶାସନ ଦାୟିତ୍ୱ ତୁଲାଉଥିଲେ । ଏମାନଙ୍କ ରାଜକୀୟ ଉପାଧି କଟୁଆଳ ଥିଲା । ସର୍ବସାଧାରଣରେ ଏହି କଟୁଆଳମାନଙ୍କର ସ୍ୱତନ୍ତ୍ର ପରିଚୟ ନିମିତ୍ତ ଏମାନଙ୍କ ନାମ ସହିତ ଭାଲୁଆ, ବାଘ, ଭୂଆଁ ସାହାଣି ବା ସାହାଣୀ ପ୍ରଭୃତି ଅଦ୍ଭୁତ ସଂଜ୍ଞା ସଂଯୁକ୍ତ କରାଯାଇଥିଲା । ଜପା ଆଉଡ୍ଡାର କଟୁଆଳମାନଙ୍କର ସଜ୍ଞା ଭୂଆଁ, କୃଷ୍ଣଚନ୍ଦ୍ରପୁର ଆଉଡ୍ଡାରେ ଭାଲୁଆ ଏବଂ ପଙ୍କପାଳ ଓ ଗୋବିନ୍ଦପୁର ଆଉଡ୍ଡା କଟୁଆଳମାନଙ୍କର ସଜ୍ଞା ଯଥାକ୍ରମେ ସାହାଣି ଓ ବାଘ ଥିବା ଦେଖାଯାଏ । ବର୍ତ୍ତମାନ ସୁଦ୍ଧା ଏହିସବୁ ଅଞ୍ଚଳ ମାନଙ୍କରେ କଟୁଆଳମାନଙ୍କର ବଂଶଧରମାନେ ବାସ କରୁଅଛନ୍ତି ଏବଂ ଏମାନେ ପୂର୍ବପୁରୁଷର ଅଭିଜାତ୍ୟ ସ୍ମରଣ କରି ଗର୍ବ ଅନୁଭବ କରିଥାନ୍ତି ।

ସାଧାରଣତଃ କଟୁଆଳ ମାନେ ରାଜ୍ୟ ମଧ୍ୟରେ ସର୍ଦ୍ଦାର ନାମରେ ପରିଚିତ ଥିଲେ । ଏମାନେ ନିଜ ନିଜ ଆଉଡ୍ଡାର ରାଜସ୍ୱ ଆଦାୟ, କ୍ଷୁଦ୍ର କ୍ଷୁଦ୍ର ମାଲମୋକଦ୍ଦମାର ବିଚାର, ଶାନ୍ତି ଓ ନିରାପତ୍ତା ରକ୍ଷା ଇତ୍ୟାଦି ଦାୟିତ୍ୱ ତୁଲାଇ ଥିଲେ । ଅରଣ୍ୟର

ଇତର ଜନ୍ତୁମାନଙ୍କ ମଧ୍ୟରେ ବ୍ୟାଘ୍ରର ପ୍ରଭାବ ପରି ଆଉଡ଼ା ମଧ୍ୟରେ କଣ୍ଢ଼ିଆଳମାନଙ୍କର ପ୍ରଭାବ ଥିଲା ।

କୁଜଙ୍ଗ ଜିଲ୍ଲାର ପ୍ରଧାନ ମହକୁମା ବା ରାଜଧାନୀ ଥିଲା କୁଜଙ୍ଗ । ଆଜିକାଲି ଏହି ଗ୍ରାମଟି "ଗଡ଼ କୁଜଙ୍ଗ" ନାମରେ ପରିଚିତ । ଏହା କୁଜଙ୍ଗ ନଦୀ ମୁହାଣର ତ୍ରିକୋଣ ଭୂମିରେ ଅବସ୍ଥିତ । ଭାରତୀୟ ରାଜ ବଂଶର ପାରମ୍ପରିକ ରୀତି ଅନୁଯାୟୀ ରାଜାମାନଙ୍କର କୌଳିକ ଧର୍ମ ମତ ଅନୁସାରେ ସେତେବେଳେ ପ୍ରତ୍ୟେକ ରାଜ ଗଡ଼ରେ ଏକ ଏକ ଅଧିଷ୍ଠାତା ଦେବ ଓ ଅଧିଷ୍ଠାତ୍ରୀ ଦେବୀ ବିଗ୍ରହ ରାଜ ବଂଶ ତଥା ରାଜ୍ୟର ଜନସାଧାରଣଙ୍କର ଇଷ୍ଟ ଦେବାଦେବୀ ରୂପେ ପୂଜିତ ହେଉଥିଲେ । ଏହି ରାଜାନୁଗତ ଧର୍ମ, ପ୍ରାଚୀନ ଭାରତବର୍ଷର ଏକ ମହାନ୍ ସଂସ୍କୃତିର ପରମ୍ପରା ବହନ କରି ଆସୁଥିଲା । ଏହି ଧରଣର ପ୍ରତିଷ୍ଠିତ ଦେବାଦେବୀ ମନ୍ଦିରମାନ ରାଜକୋଷରୁ ବିପୁଳ ଅର୍ଥ ବ୍ୟୟରେ ନିର୍ମିତ ହେଉଥିଲା । ଆଜିକାଲିର ଦେଶରକ୍ଷା ବିଭାଗ ପରି, ପ୍ରାଚୀନ ରାଜତନ୍ତ୍ର ଭାରତବର୍ଷରେ ଆଦର୍ଶ ମନ୍ଦିର, ସୌଧାଦି ନିର୍ମାଣ କାର୍ଯ୍ୟ, ଶାସନରାଜକରୁଣୀ ବିଭାଗ ଦ୍ୱାରା ପରିଚାଳିତ ହେଉଥିଲା ।

ଭାରତ ତଥା ଉତ୍କଳ ଇତିହାସ ଅନୁଶୀଳନରୁ ଜଣାଯାଏ, ଏହି ମନ୍ଦିର ସବୁହିଁ ସମ୍ପୃକ୍ତ ରାଜ୍ୟର ଶକ୍ତି ଓ ସମୃଦ୍ଧିର ମାନଦଣ୍ଡ ସ୍ୱରୂପ ବିଦ୍ୟମାନ ଥିଲେ ।

କୁଜଙ୍ଗଗଡ଼ର ଅଧିଷ୍ଠ ଦେବତା 'କୁଞ୍ଜ ବିହାରୀ' ଓ ଅଧିଷ୍ଠାତ୍ରୀ ଦେବୀ 'କନକ ଦୁର୍ଗା' ଅଟନ୍ତି । କୁଞ୍ଜବିହାରୀଙ୍କର କମନୀୟ ମଣି ବିଗ୍ରହ ରାଜପ୍ରାସାଦ ସଂଲଗ୍ନ ଏକ ସୁନ୍ଦର ନିର୍ମିତ

ମନ୍ଦିରଟିରେ ପ୍ରତିଷ୍ଠିତ । ଶ୍ରୀ କୁଞ୍ଜବିହାରୀ କୁଜଙ୍ଗ ରାଜ ବଂଶର ଆରାଧ୍ୟ ଦେବତା ଥିବାରୁ, ରାଜବଂଶ ବୈଷ୍ଣବ ମତାବଲମ୍ବୀ ଥିବାର ସ୍ପଷ୍ଟ ଅନୁମିତ ହୁଏ । କୁଜଙ୍ଗର ନାମକରଣ 'ରାଜ ବଂଶର ଉପାସ୍ୟ ଦେବତା 'କୁଞ୍ଜ ବିହାରୀଙ୍କ' ନାମାନୁଯାୟୀ ମଧ୍ୟ ହୋଇଅଛି । କୁଞ୍ଜ ବିହାରୀଙ୍କ ପ୍ରତିଷ୍ଠାତା ରାଜା ଜଣେ ନିଷ୍ଠାବାନ୍ କୃଷ୍ଣ ଭକ୍ତ ଥିବାର ଜଣାଯାଏ । ସେ ସ୍ୱୀୟ ଉପାସ୍ୟ ଦେବଙ୍କର ଅଧିଷ୍ଠାନ ପରିସର ଭୁକ୍ତ ଅଞ୍ଚଳକୁ କୁଞ୍ଜାଙ୍ଗ ନାମରେ ନାମିତ କରି ଶ୍ରୀକୃଷ୍ଣଙ୍କର ଲୀଳାଭୂମି ବୃନ୍ଦାବନ ଧାମର ନିଭୃତ କୁଞ୍ଜ ଲୀଳା ଆସ୍ୱାଦନ କରୁଥିଲେ । କାଳକ୍ରମେ ଏହି କୁଞ୍ଜାଙ୍ଗ ଶବ୍ଦଟି କୁଞ୍ଜଙ୍ଗ କ୍ରମେ କୁଜଙ୍ଗ ରୂପେ ଅପଭ୍ରଂଶ ହୋଇ ଅଧୁନା ଗଡ଼ କୁଜଙ୍ଗ ନାମରେ ପରିଚିତ ଥାଇ ରାଜା ରାଜୁଡ଼ା ଶାସିତ ଖଣ୍ଡ ବିଖଣ୍ଡିତ ପ୍ରାଚୀନ ଉତ୍କଳର ପୂର୍ବ ସୀମାନ୍ତ ସାଗର ବେଳା ଭୂମିରେ ଏକ ମୂକ ସାକ୍ଷୀ ସ୍ୱରୂପ ବିଦ୍ୟମାନ ରହିଛି ।

ଗଡ଼ର ଅଧିଷ୍ଠାତ୍ରୀ ଦେବୀଙ୍କ ନାମ 'ଶ୍ରୀ କନକ ଦୁର୍ଗା' । ଏହି ଦେବୀ ସ୍ୱର୍ଣ୍ଣମୟୀ ଧାତୁ ବିଗ୍ରହ ଅଟନ୍ତି । ଏହି ଦିଅଁମାନଙ୍କର ସେବା ପୂଜା ନିମିତ୍ତ ବିପୁଳ ଭୂସମ୍ପତ୍ତି ଖଞ୍ଜା ଥିଲା । ବର୍ଷର ବିଭିନ୍ନ ସମୟରେ ଯାନିଯାତ୍ରାଦି ସାଡ଼ମ୍ବରେ ପାଳିତ ହେଉଥିଲା । ଏହିସବୁ ଯାନିଯାତ୍ରା ମଧ୍ୟରେ ରଥଯାତ୍ରା ଉତ୍ସବ ବିଶେଷ ଆକର୍ଷଣୀୟ ଓ ଲୋକପ୍ରିୟ ଉତ୍ସବ ରୂପେ ପ୍ରସିଦ୍ଧି ଲାଭ କରି-ଥିଲା । ବହୁ ଦୂର ଦୂରାନ୍ତ ଅଞ୍ଚଳରୁ ରଥଯାତ୍ରା ଉପଲକ୍ଷ୍ୟେ ଏଠାରେ ଜନସମାଗମ ହେଉଥିଲା । 'କୁଜଙ୍ଗ ରଥ ଯାତ୍ରା ଏପରି ଆକର୍ଷଣୀୟ ହେବାର କାରଣ ସହିତ ଅଖିଳ ବ୍ରହ୍ମାଣ୍ଡର କର୍ତ୍ତା

ଉତ୍କଳର ପ୍ରାଣକେନ୍ଦ୍ର ଶ୍ରୀଜଗନ୍ନାଥଙ୍କର ଅବର୍ଣ୍ଣନୀୟ ଗୌରବୋଜ୍ଜ୍ୱଳ ଇତିବୃତ୍ତି ଘନିଷ୍ଠ ଭାବେ ଜଡ଼ିତ ।

୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳର ଶେଷ ଗଜପତି ମହାରାଜା ମୁକୁନ୍ଦଦେବ ସ୍ୱୀୟ ବିଶ୍ୱସ୍ତ ଉଚ୍ଚ ପଦସ୍ଥ କର୍ମଚାରୀମାନଙ୍କ ବିଶ୍ୱାସଘାତକତା ଯୋଗୁଁ ବଙ୍ଗ ସୁଲତାନଙ୍କ ସହ ଯୁଦ୍ଧରେ ପରାସ୍ତ ହୋଇ ନିହତ ହୋଇଥିଲେ । କଥାରେ ଅଛି 'କାଳସ୍ୟ କୁଟିଳା ଗତିଃ ।' ସ୍ରୋତସ୍ୱିନୀର ପ୍ରବାହ ପରି ସମୟର ଗତି ବଡ଼ କୁଟିଳ । ହଜାର ହଜାର ବର୍ଷ ଧରି ଯେଉଁ ଓଡ଼ିଆ ଜାତି ଦୁର୍ଦ୍ଧର୍ଷ ମନୀଷା ବହୁ ବୈଦେଶିକ ଆକ୍ରମଣକୁ ପ୍ରତିହତ କରି ସମଗ୍ର ଭାରତବର୍ଷରେ ନିଜର ସ୍ୱାଧୀନତା ସହ ଜାତୀୟ ଜଗନ୍ନାଥ ସଂସ୍କୃତିକୁ ଜାଜ୍ୱଲ୍ୟମାନ କରି ରଖିଥିଲା ତାହା ଏହି ସମୟରୁ ଚିରଦିନ ପାଇଁ ବିଲୀନ ହୋଇଗଲା ।

ଉତ୍କଳ ସମ୍ରାଟ ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ବଙ୍ଗ ସୁଲତାନଙ୍କ କୁଖ୍ୟାତ ସେନାପତି "କଳା ପାହାଡ଼;" ମୁସଲମାନୀ ନାମ 'କାଲି ଚାନ୍ଦ' ଉତ୍କଳର ଦେବାଦେବୀ ମନ୍ଦିର ଓ ବିଗ୍ରହ ଧ୍ୱଂସର ତାଣ୍ଡବ ଲୀଳା ଆରମ୍ଭ କରି ଦେଇଥିଲେ । ଏଠାରେ ଉତ୍କଳ ମାତାର କୁଳାଙ୍ଗାର ପୁତ୍ର ଉପରୋକ୍ତ କଳା ପାହାଡ଼ର ସଂକ୍ଷିପ୍ତ ପରିଚୟ ଦେବାର ପ୍ରାସଙ୍ଗିକତା ଆବଶ୍ୟକ ହେଉଛି ।

ଏହି କଳା ପାହାଡ଼ ଓଡ଼ିଶାର ଯାଜପୁର ଅଞ୍ଚଳର ଜନୈକ ପଣ୍ଡିତ ବ୍ରାହ୍ମଣଙ୍କର ପୁତ୍ର । ଏହାଙ୍କର ପିତା ଦେଶ ଦ୍ରୋହ ଅପରାଧରେ ଉତ୍କଳ ସମ୍ରାଟଙ୍କ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇ ବଙ୍ଗ ସୁଲତାନଙ୍କ ଦରବାରରେ ପଣ୍ଡିତ ରୂପେ ଚାକିରୀ କରୁ-

ଥିଲେ । ପଣ୍ଡିତଙ୍କର ଏକ ମାତ୍ର ପୁତ୍ର ନିରଞ୍ଜନ ପଣ୍ଡା ସାମୟିକ ଭାବେ ସୁଲତାନଙ୍କ ଦରବାରରେ ପିତାଙ୍କୁ ସାହାଯ୍ୟ କରୁଥିଲେ । ନିରଞ୍ଜନ ଯେପରି ବିଦ୍ୱାନ୍ ଓ ସବ ଗୁଣ ସମ୍ପନ୍ନ ପଣ୍ଡିତଥିଲେ, ସେହିପରି ବଳିଷ୍ଠ, ସୁଗଠିତ, ସୁଶ୍ରୀମଣ୍ଡିତ, ବପୁବନ୍ତ ଯୁବକ ଥିଲେ । ଦୁର୍ଦ୍ଧର୍ଷ ମୋଗଲ ଶକ୍ତି ସହିତ ସାମରିକ ଭାରସାମ୍ୟ ରକ୍ଷା ନିମିତ୍ତ ସେତେବେଳେ ବାଧ୍ୟତାମୂଳକ ଭାବେ ପ୍ରତ୍ୟେକ ଓଡ଼ିଆଙ୍କୁ ତରୁଣାବସ୍ଥାରୁ ହିଁ ମଲ୍ଲବିଦ୍ୟା, ସମରାଭ୍ୟାସ ଆଦି ସହର ତଥା ପଲ୍ଲୀ ଅଞ୍ଚଳ ସ୍ଥିତ ଅଖଡ଼ାମାନଙ୍କରେ ଶିକ୍ଷା କରିବାକୁ ପଡ଼ୁଥିଲା । ଯୁବକ ନିରଞ୍ଜନ ଏସବୁରେ ବେଶ୍ ପଟୁତା ହାସଲ କରିଥିଲେ ।

ବଙ୍ଗ ସୁଲତାନ୍ ସୁଲେମାନ ଖାଁଙ୍କର ରୂପସୀ ଯୁବତୀକନ୍ୟା ନିଜରନ୍ ବିବି ନିରଞ୍ଜନଙ୍କର ରୂପଲାବଣ୍ୟରେ ନିଜକୁ ହଜାଇ ଥିଲେ ଏବଂ ତାହାଙ୍କୁ ସେ ପତି ରୂପେ ନପାଇଲେ ଆତ୍ମହତ୍ୟା କରିବାର ସଂକଳ୍ପ, ପରିଚାରିକାମାନଙ୍କ ଦ୍ୱାରା ନିଜର ପିତାଙ୍କୁ ଜଣାଇ ଦେଇଥିଲେ । ଯୁବକ ନିରଞ୍ଜନଙ୍କର ମଧ୍ୟ ଅନୁରୂପ ବାସନା ଥିଲା ।

ସନ୍ଧି, ମିତ୍ରତା, ବୈବାହିକ ସମ୍ପର୍କ ଇତ୍ୟାଦି ସମ୍ବନ୍ଧ ସ୍ଥାପନ ଦ୍ୱାରା ସମଗ୍ର ଭାରତରେ ମୋଗଲ ଶାସନ ପ୍ରତିଷ୍ଠା କରିବା ସେତେବେଳେ ବାଦସାହ ଆକବରଙ୍କର ଶାସନ ତାନ୍ତ୍ରିକ ମନ୍ତ୍ର ଥିଲା । ବାଦସାହଙ୍କର ଏହି ଅଭିସନ୍ଧିମୂଳକ ରାଜନୈତିକ କୌଶଳ ମୋଗଲଶାସନମାନଙ୍କର ସାମ୍ରାଜ୍ୟ ବିସ୍ତାରର ଅନୁସୃତ ପଦ୍ଧତି ଥିଲା । ସୁତରାଂ ନିଜ କନ୍ୟାର ନିରଞ୍ଜନଙ୍କ ସହିତ ବିବାହ ପ୍ରସ୍ତାବ ସୁଲେମାନଙ୍କ ମନରେ ଅଜେୟ ଉତ୍କଳ ଆକ୍ରମଣର ଦ୍ୱାର

ଉନ୍ମୋଚନ କରି ଦେଇଥିଲା । ନଜରର ଅଭିଷ୍ଟ ସାଧନର ଏହା ପ୍ରକୃଷ୍ଟ ସମୟ ଓ ଏହା ଉପଲବ୍ଧି କରି ସୁଲେମାନ ନିରଞ୍ଜନଙ୍କୁ ଜଣାଇ ଦେଲେ ଯେ ସେ ଇସ୍‌ଲାମ ଧର୍ମରେ ଧର୍ମାନ୍ତରିତ ନ ହେଲେ ସୁଲ୍‌ତାନଙ୍କ ଜାମାତା ହେବାକୁ ଯୋଗ୍ୟ ବିବେଚିତ ହେବେ ନାହିଁ ।

ଉଦ୍ଦାମ ଯୌନ ପିପାଶା ପରିଣତିକୁ ଅପେକ୍ଷା ରଖେ ନାହିଁ । ଉତ୍କଳ ଜନନୀର କୃତଘ୍ନ ପୁତ୍ର ନିରଞ୍ଜନ, ନଜରନ୍‌ଙ୍କ କ୍ଷଣସ୍ଥାୟୀ ସୌନ୍ଦର୍ଯ୍ୟରେ ଏପରି ତନ୍ମୟ ଥିଲେ ଯେ, ସ୍ୱଧର୍ମ ପରିତ୍ୟାଗ-ପୂର୍ବକ ଇସଲାମି ଧର୍ମରେ ଧର୍ମାନ୍ତରିତ ହୋଇ ବଙ୍ଗ ସୁଲତାନଙ୍କ ଜାମାତା ହେବାର କୁଖ୍ୟାତି ଲାଭ କରିବାକୁ ସାମାନ୍ୟ କାଳ ମଧ୍ୟ ବିଳମ୍ବ କରି ପାରିଲେ ନାହିଁ । ମାତ୍ର କ୍ଷଣିକ ଇନ୍ଦ୍ରିୟଜନିତ ଉତ୍ତେ-ଜନା କେବେ ହେଲେ କୌଣସି ମହାନ୍ ଜାତିସ୍ୱ ଭାବର ବିଲୋପ ସାଧନ କରି ନ ପାରେ । ମାତ୍ର ଏକ ବର୍ଷ ନ ବିତୁଣୁ ପଣ୍ଡିତ ନିରଞ୍ଜନ ସ୍ୱଧର୍ମାନୁଚିନ୍ତାରେ ହୃଦୟ ମଧ୍ୟରେ ତୀବ୍ର ଯନ୍ତ୍ରଣା ଅନୁଭବ କରିବାକୁ ଲାଗିଲେ । ସୁଲ୍‌ତାନ ପ୍ରାସାଦ ମଧ୍ୟରେ ବେଗମୀ ବେଶ ପରିପାଟୀ ଶୋଭିତା ନଜରନ୍‌ଙ୍କ ସହବାସ ତାଙ୍କୁ ସାହାରର ଉତ୍ତପ୍ତ ବାଲୁକା ଶଯ୍ୟାସ୍ଥିତ ବିଶାଳ କଣ୍ଟକଯୁକ୍ତ ଖଜୁରୀ ତଳବାସୀ ଜଣେ ଦଣ୍ଡିତ ଅପରାଧୀର ନିର୍ବାସନ ଦଣ୍ଡ ପରି ପ୍ରତୀତ ହେଲା । "ସ୍ୱଧର୍ମେ ମରଣଂ ଶ୍ରେୟଃ, ପର ଧର୍ମୋ ଭୟାବହ ।" ବିଶ୍ୱର ପ୍ରସିଦ୍ଧ ଏହି ନୀତିଶାସ୍ତ୍ର 'ଶ୍ରୀମଦ୍‌ଭଗବତ୍ ଗୀତା'ର ଏହି ମହାନ୍ ନିର୍ଘୋଷ ପଣ୍ଡିତ ନିରଞ୍ଜନଙ୍କର ପ୍ରାଣତନ୍ତ୍ରୀରେ ବାରମ୍ବାର ପ୍ରତିଧ୍ୱନିତ ହେଲା । ଅହର୍ନିଶ ଅନୁତାପାନଳରେ

ଦଗ୍ଧ ହୋଇ ସେ ସ୍ୱଦେଶ ଓ ସ୍ୱଧର୍ମ ପ୍ରତ୍ୟାବର୍ତ୍ତନର ସୁଯୋଗ ପ୍ରତୀକ୍ଷାରେ କାଳାତିପାତ କରିବାକୁ ଲାଗିଲେ ।

ନଜରନ୍ ରାଜବଂଶୋଦ୍ଭବା ସୁଶିକ୍ଷିତା ରମଣୀ । ସ୍ୱାମୀଙ୍କର ପ୍ରଚ୍ଛନ୍ନ ଅନ୍ତର୍ଦ୍ଦାହ ପ୍ରଶମନ ପାଇଁ ଅପ୍ରାଣ ଚେଷ୍ଟିତ ଥାଇ ବିଫଳ-କାମ ହୋଇଥିଲେ ମଧ୍ୟ ସେ ହତାଶାର ବଶବର୍ତ୍ତୀ ହୋଇ ଭାଙ୍ଗି ପଡ଼ି ନ ଥିଲେ । ଶୁଦ୍ଧଚରିତା ନଜରନ୍ ସ୍ୱାମୀଙ୍କର ଜୀବନ ସରସ ସୁଖମୟ କରି ନ ପାରିଲେ ତାହାଙ୍କର ନାରୀ ଜୀବନ ନିରର୍ଥକ ବୋଲି ସେ ଉପଲବ୍ଧି କରିବାକୁ ଲାଗିଲେ । ଅନବରତ ସ୍ୱାମୀଙ୍କର ସୁଖାନୁଚିନ୍ତା ରୂପ ପ୍ରଚ୍ଛନ୍ନ ସାଧନା ନଜରନଙ୍କ କୋମଳ ପ୍ରାଣକୁ ଏକ ବାସ୍ତବ ପ୍ରେରଣା ଯୋଗାଇଥିଲା । ସେ ମନେକଲେ ମୋର ନଶ୍ୱର ରୂପ ମୋହରେ ଭୁଲି ସ୍ୱାମୀ ମୋର ତାହାଙ୍କର ପବିତ୍ର ସ୍ୱଧର୍ମ ତ୍ୟାଗ କରିଅଛନ୍ତି । ତାଙ୍କର ସୁଖବିଧାନ କରିବାକୁ ହେଲେ, ନିଜର ଆରାଧ୍ୟ ଦେବତା ସ୍ୱାମୀଙ୍କର ପ୍ରକୃତ ସହଧର୍ମିଣୀ ହେବା ଆବଶ୍ୟକ । ଏହି ମହତ୍ ଉଦ୍ଦେଶ୍ୟ ସାଧନ କ୍ଷେତ୍ରରେ ନିଜ ପିତାଙ୍କର ବା ମୋଗଲ ସାମ୍ରାଜ୍ୟର ଯେଉଁ ପ୍ରକାରର କ୍ଷତି ସାଧିତ ହେଉ ନା କାହିଁକି, ନିଜକୁ ଏହି କଠୋର କର୍ତ୍ତବ୍ୟ ପାଳନ କରିବାକୁ ହେବ ବୋଲି ନଜରନ୍ ସଂକଳ୍ପବଦ୍ଧ ହେଲେ ।

ଦିନେ ଗଭୀର ନିଶୀଥ ସମୟରେ ଅନ୍ତଃପୁରର ନିର୍ଜନ ଶୟନ କକ୍ଷରେ ଅନୁତପ୍ତା ନଜରନ୍ ସ୍ୱାମୀଙ୍କର ପଦ ଦ୍ୱୟ ଧାରଣ ପୂର୍ବକ କାକୁତିଭରା କଣ୍ଠରେ କହିଲେ, "ସ୍ୱାମୀ ! ଆପଣଙ୍କୁ ସ୍ୱଧର୍ମ ଛଡ଼ା କରାଇବା ଭଳି ଉତ୍କଟ ଅପରାଧ ପାଇଁ ପ୍ରଥମତଃ ଦାୟୀ ମୁଁ । ଆପଣଙ୍କ ବ୍ୟତୀତ ସ୍ୱୟଂ ଖୋଦା ମଧ୍ୟ ମୋତେ ଅପରାଧମୁକ୍ତ

କରିପାରିବେ ନାହିଁ । ମୋତେ ବିଜାତୀୟା ମନେ କରି ଆଉ ଘୃଣା କରନ୍ତୁ ନାହିଁ, ଯେହେତୁ ବର୍ତ୍ତମାନ ମୁଁ ଆପଣଙ୍କ ସହଧର୍ମିଣୀ । ଅଜ୍ଞତାଜନୀତ ଅପରାଧ ନିଶ୍ଚୟ ମାଲିକ ମାର୍ଜ୍ଜନା କରିବେ । ଆପଣ ଏହି ଶୁଭ ମୁହୂର୍ତ୍ତରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପୂର୍ବକ ଉତ୍କଳ ସମ୍ରାଟଙ୍କ ଶରଣାପନ୍ନ ହୋଇ, ଧର୍ମୀୟ ରୀତି ଅନୁଯାୟୀ ସ୍ୱଧର୍ମ ପୁନର୍ଗ୍ରହଣ କରନ୍ତୁ ଏବଂ ପତ୍ନୀ ହିସାବରେ ମୋତେ କ୍ଷମା ପ୍ରଦାନ କରି ଆପଣଙ୍କ ଧର୍ମ ପ୍ରଥା ଅନୁସାରେ ମୋତେ ଧର୍ମପତ୍ନୀ ରୂପେ ଗ୍ରହଣ କରି ମୋର୍ ନାରୀ ଜନ୍ମ ସାର୍ଥକ କରନ୍ତୁ ।”

ନିଜ ରମଣୀଙ୍କର ଉଲ୍ଲିଖିତ ଯୁକ୍ତିସିଦ୍ଧ ପରାମର୍ଶ ନିରଞ୍ଜନଙ୍କ ହୃଦୟକୁ ବେଶ୍ ସ୍ପର୍ଶ କଲା । ସେ ଟିକେ ପରେ ସେହି ମୁହୂର୍ତ୍ତରେ ସୁଲତାନ ପ୍ରାସାଦ ତ୍ୟାଗ କରି ଛଦ୍ମ ବେଶରେ ବଙ୍ଗ ଭୂମି ଅତି-କ୍ରମ କରି ମାତୃଭୂମି ଉତ୍କଳରେ ପ୍ରବେଶ କଲେ । ସ୍ୱଧର୍ମରେ ପୁନଃ ପ୍ରବେଶ ଅଧିକାର ପ୍ରାପ୍ତି ନିମିତ୍ତ ଉତ୍କଣ୍ଠା ଓ ଆବେଗଭରା ପ୍ରାଣରେ ସେ ଶ୍ରୀକ୍ଷେତ୍ରକୁ ଛୁଟିଯାଇ ଧର୍ମାଚାର୍ଯ୍ୟ ମୁକ୍ତିମଣ୍ଡପ ପଣ୍ଡିତ ସଭାରେ ନିଜର ଆବେଦନ ଉପସ୍ଥାପିତ କଲେ । ମାତ୍ର ବ୍ୟବ-ସ୍ଥାପକ ପଣ୍ଡିତମଣ୍ଡଳୀ ସେମାନଙ୍କର ଚୂଡ଼ାନ୍ତ ନିଷ୍ପତ୍ତି ଦେଲେ ଯେ, ଗୋମାଂସ-ଭୋଜୀ ଯେ କୌଣସି ଅଣହିନ୍ଦୁ ବା ଧର୍ମଭ୍ରଷ୍ଟ ହିନ୍ଦୁ ପକ୍ଷେ ଏହା ନିଷିଦ୍ଧ ଅଟେ । ମୁକ୍ତିମଣ୍ଡପ ପଣ୍ଡିତାଚାର୍ଯ୍ୟ ବର୍ଗଙ୍କର ଏତାଦୃଶ ନିଷ୍ପତ୍ତିର ପରିଣତି ଉତ୍କଳ ଇତିହାସର ବିଶେଷ କରି ସନାତନ ହିନ୍ଦୁ ଧର୍ମର ତଥା ଶ୍ରୀ ଜଗନ୍ନାଥ ଧର୍ମ ସାମ୍ୟ ଦର୍ଶନର ଏକ କଳଙ୍କମୟ ଅଧ୍ୟାୟ ରୂପେ ଲିପିବଦ୍ଧ ହୋଇ ଏ ଜାତିର ମହାନ୍ ଜାତୀୟତାକୁ ଉପହାସ କରୁଛି ।

ମୁକ୍ତିମଣ୍ଡପ ସଭାର ଅସମୀଚୀନ ସଂକୀର୍ଣ୍ଣ ରକ୍ଷଣଶୀଳତାପୂର୍ଣ୍ଣ

ଇତୃଶ ନର୍ମମ ନଷ୍ପତ୍ତିରେ କ୍ଷୁବ୍ଧ ହୋଇ ସେ ନଷ୍ଠୁର ପ୍ରଚ୍ଛନ୍ନାଂସା ଗ୍ରବ ପୋଷଣ କରି ସଂକଲ୍ପ ବଦ୍ଧ ହେଲେ । ଯେଉଁ ଧର୍ମର କ୍ଷାଶପୂ କ୍ଷମା ନାହିଁ, ଯେଉଁ ଧର୍ମରେ ଆଗ୍ରହୀ ତଥା ଅନୁରାଗୀ ପ୍ରାର୍ଥୀଙ୍କୁ ନଜ ପରିସର ଭୁକ୍ତ କରିବାର ଉଦାରତା ନାହିଁ, ଏଭଳି ଏକ ସୀମିତ ରକ୍ଷଣଶୀଳ ଧର୍ମକୁ ପୃଥିବୀ ପୃଷ୍ଠରୁ ଲୋପ କରି ଦେବାକୁ ପଡ଼ିବ । ଏହିପରି ଏକ ଦୃଢ଼ ସଙ୍କଳ୍ପ ନେଇ ସେ ପୁନରାୟ ବଙ୍ଗ ପ୍ରତ୍ୟାବର୍ତ୍ତନ କଲେ ।

ସୁଲତାନ ସୁଲେମାନ୍ ଏହିପରି ଏକ ଆକସ୍ମିକ ସୁଯୋଗ ପ୍ରତୀକ୍ଷାରେ ଥିଲେ । ଜାମାତାଙ୍କୁ ଏକ ବର୍ଷ ଯାବତ ମୋଗଲ ରଣ କୌଶଳରେ ତାଲିମ କରାଇ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଉତ୍ତର ଓ ପଶ୍ଚିମ ଦୁଇ ପଟରୁ ଆକ୍ରମଣ କରି ତତ୍କାଳୀନ ଉତ୍କଳ ସମ୍ରାଟ ମୁକୁନ୍ଦ ଦେବଙ୍କ ଦ୍ୱାରା ପରାସ୍ତ ହୋଇ ବିଫଳ ମନୋ-ରଥରେ ଫେରି ଯାଇଥିଲେ । ତତ୍ପରେ ବର୍ଷ ବିପୁଳ ସୈନ୍ୟ-ବାହିନୀ ଯୋଗେ ପୁନଶ୍ଚ ଓଡ଼ିଶା ଆକ୍ରମଣ କରିଥିଲେ । ପୂର୍ବ କଥିତ ମତେ ଏଥର ସୁଲେମାନ ମୁକୁନ୍ଦ ଦେବଙ୍କର କେତେକ ବିଶ୍ୱସ୍ତ ଉଚ୍ଚ ପଦସ୍ଥ କର୍ମଚାରୀଙ୍କୁ କରାୟତ୍ତ ପୂର୍ବକ ମୁକୁନ୍ଦ ଦେବଙ୍କୁ ଯୁଦ୍ଧରେ ନିହତ କରି ବୀର ଭୂମି ଉତ୍କଳକୁ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାର ଗୌରବ ଅର୍ଜନ କରିଥିଲେ ।

ମୁକୁନ୍ଦ ଦେବ ଦିଲ୍ଲୀ ବାଦ୍ସାହ ଆକବରଙ୍କ ସହିତ ଇତି ପୂର୍ବରୁ ବନ୍ଧୁତା ସୂତ୍ରରେ ଆବଦ୍ଧ ଥିଲେ ମଧ୍ୟ ସେ ଏ ଘଟଣାରେ ସମ୍ପୂର୍ଣ୍ଣ ନୀରବ ରହିଥିଲେ । ଏଥିରୁ ଆକବରଙ୍କର ସୁଚତୁର କୂଟନୈତିକତା ସହଜେ ଅନୁମେୟ ।

ଉତ୍କଳ ରାଜ୍ୟ ମୋଗଲ ଶାସନାଧୀନ ହେଲା । ଧର୍ମତ୍ୟାଗୀ ନିରଞ୍ଜନ ଯାହା ଏକ ବର୍ଷ ଧରି ଧର୍ମର ମୂଳୋତ୍ପାଟନ ନିମିତ୍ତ ବିଭିନ୍ନ ଯୋଜନା ଓ କଳ୍ପନା ଜଳ୍ପନାରେ ବ୍ୟାପୃତ ରହିବା ପରେ ତତ୍ପର ବର୍ଷ ଅଗଣିତ ମୁସଲମାନ ଅନୁଚରବର୍ଗଙ୍କ ସହ ଓଡ଼ିଶାର ତତ୍କାଳୀନ ଉତ୍ତର ସୀମାନ୍ତ ଜିଲ୍ଲା ୨୪ ପ୍ରଗଣାରେ ପ୍ରବେଶ କଲେ । ଏ ଦୁର୍ଦାନ୍ତ ଅଭିଯାନର ଲକ୍ଷ୍ୟଥିଲା ଓଡ଼ିଶାର ପ୍ରତ୍ୟେକ ଗ୍ରାମର ଗ୍ରାମ ଦେବତାଙ୍କ ଠାରୁ ଆରମ୍ଭ କରି ଶ୍ରୀକ୍ଷେତ୍ରର ଜଗନ୍ନାଥ ପର୍ଯ୍ୟନ୍ତ ଯେତେ ଦେବା ଦେବୀ ବିଗ୍ରହ ତଥା ମନ୍ଦିର ଅଛି ସେ ସବୁର ବିଲୋପ ସାଧନ କରିବା । ତାହାହିଁ ହେଲା । କାଲାଚାନ୍ଦ ବା କଳାପାହାଡ଼ଙ୍କ ନାମରେ ସାରା ଉତ୍କଳରେ ଭୀଷଣ ଘୂର୍ଣ୍ଣିବାତ୍ୟା ବହିଗଲା । ବହୁ ଜାତି ଓ ଦେଶପ୍ରେମୀ ଉତ୍କଳୀୟ ନିଜର ସମ୍ମାନ ଓ ଜୀବନକୁ ଜଳାଞ୍ଜଳି ଦେଇ କେତେକ ଦେବାଦେବୀ ବିଗ୍ରହ ଅକ୍ଷୁର୍ଣ୍ଣ ରଖି ପାରିଥିଲେ ହେଁ ଓଡ଼ିଶାର ବହୁ ପ୍ରାଚୀନ ମନ୍ଦିର ଓ ବିଗ୍ରହ କଳାପାହାଡ ବାହିନୀ ଦ୍ୱାରା ବିଧ୍ୱଂସ ହୋଇଥିଲା ।

ଏହି ଦୁର୍ବୃତ୍ତ ବାହିନୀର ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା ସମ୍ବାଦ ପାଇବା ମାତ୍ରେ ଶ୍ରୀମନ୍ଦିର ସେବା ପରିଚାଳନା ତତ୍ତ୍ୱାବଧାରକ ସୁଚତୁର ବିଶର ମହାନ୍ତି କେତେକଣ ସାହସୀ ସେବକ ପଣ୍ଡାଙ୍କ ସହଯୋଗରେ ରତ୍ନସିଂହାସନରୁ ତିନି ବିଗ୍ରହଙ୍କୁ ନେଇ ଗୋପନରେ ଚିଲିକା ହ୍ରଦ ମଧ୍ୟକୁ ପଳାଇ ଯାଇଥିଲେ । ସେଠାରେ ହ୍ରଦ ମଧ୍ୟସ୍ଥ ପାରିକୁଦ ଦ୍ୱୀପରେ ଶାୟିତ ଭାବେ ବିଗ୍ରହମାନଙ୍କୁ ପୋତି ରଖା ଯାଇଥିଲା ।

କଳାପାହାଡ଼ ବାହ୍ମିନୀ ପୁରୀରେ ଉପନୀତ ହୋଇ ମନ୍ଦିର ମଧ୍ୟରେ ଋଅଁମାନଙ୍କୁ ନପାଇଁ କୌଣସି ସୂତ୍ରରୁ ବିଗ୍ରହମାନେ ଚିଲିକା ହ୍ରଦ ମଧ୍ୟକୁ ସ୍ଥାନାନ୍ତରିତ ହୋଇଥିବା ସମ୍ବାଦ ପ୍ରାପ୍ତ ହୋଇ ଅବିଳମ୍ବେ ସେଠାକୁ ଯାତ୍ରା ଆରମ୍ଭ କରିଥିଲେ । ଏଥି ମଧ୍ୟରେ ପ୍ରତ୍ୟୁତ୍ପନ୍ନମତି ବିଶର ମହାନ୍ତି ତିନି ଋଅଁଙ୍କର ତିନୋଟି ନକଲ ମୂର୍ତ୍ତି ନିର୍ମାଣ କରାଇ ପାରିକୁଦ ଦ୍ୱୀପର ଏକ ଗୁଳ୍ମ କୁଞ୍ଜ ମଧ୍ୟରେ ଲୁକ୍‌କାୟିତ ରଖିଥିଲେ । କଳାପାହାଡ଼କୁ ପ୍ରତାରିତ କରିବା ଉଦ୍ଦେଶ୍ୟରେ ପଣ୍ଡାମାନେ ଭୀତତ୍ରସ୍ତ ହୋଇ ଥିବାର ଛଳନା ଦେଖାଇ ଉକ୍ତ ନକଲ ବିଗ୍ରହମାନଙ୍କୁ କଳାପାହାଡ଼ ହସ୍ତରେ ଅର୍ପଣ କରି ଦେଇଥିଲେ । ଏହି ମୂର୍ତ୍ତି ସମୂହଙ୍କୁ ସଙ୍ଗେ ସଙ୍ଗେ ସେଠାରେ ଦଗ୍‌ଧୀଭୂତ କରାଇ ହିନ୍ଦୁ ଧର୍ମର ଚରମ ପ୍ରତୀକର ବିଲୋପ ସାଧନର ଗୌରବ ନେଇ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ କଳାପାହାଡ଼ ସଦଳବଳେ ନୌକା ଯୋଗେ ହ୍ରଦ ପାର ହେଲେ । ପ୍ରାୟତଃ ସବୁ ସମୟରେ ପୃଥିବୀର ପ୍ରତ୍ୟେକ ଜାତି ମଧ୍ୟରେ ଦେଶଦ୍ରୋହୀ, ଜାତିଦ୍ରୋହୀ, ବିଶ୍ୱାସଘାତକ ଶ୍ରେଣୀର ନଗଣ୍ୟ ସଂଖ୍ୟକ ବ୍ୟକ୍ତି ସୁବର୍ଣ୍ଣ ଶସ୍ୟରାଶି ମଧ୍ୟରେ ନିବାର କଣିକା ସଦୃଶ ରହିଥିବାର ନଯୂର ଲକ୍ଷିତ ହୁଏ ।

ନୌକାରୁ ଅବତରଣ କଲା ମାତ୍ରେ କଳାପାହାଡ଼ ଏହି ଶ୍ରେଣୀର ଜନୈକ ତୋଷାମୋଦକାରୀ ହୀନ ବୃତ୍ତିଧାରୀ ବ୍ୟକ୍ତିଠାରୁ ଶୁଣିବାକୁ ପାଇଲେ ଯେ ସେ ନକଲ ଜଗନ୍ନାଥ ମୂର୍ତ୍ତି ଦଗ୍‌ଧ କରି ଅଛନ୍ତି । ଏହି ଗୁପ୍ତ ସମ୍ବାଦ ପାଇବା ମାତ୍ରେ କଳାପାହାଡ଼ ପୁନରାୟ ପାରିକୁଦ ଅଭିମୁଖେ ନୌକାରୋହଣ କଲେ ।

ଏଥର କଳାପାହାଡ଼ଙ୍କର ପୈଶାଚିକ ମନୋବୃତ୍ତିର

ବିଧର୍ମିକ ହସ୍ତରେ ଅନୁମେୟ । ପାରିକୁଦସ୍ଥ ଦୁଇ ରକ୍ଷକ ପଣ୍ଡା ମାନେ ଜୀବନ ରକ୍ଷା ନିମିତ୍ତ ଅନନ୍ୟୋପାୟ ହୋଇ ସମାଧିସ୍ଥ ଇଷ୍ଟଦେବମାନଙ୍କୁ କଳାପାହାଡ଼ଙ୍କୁ ଦେଖାଇ ଦେବାକୁ ବାଧ୍ୟ ହେଲେ । ପ୍ରାତଃ ସ୍ମରଣୀୟ ବିଶର ମହାନ୍ତି କିନ୍ତୁ ସେତେବେଳେ ନିକଟସ୍ଥ ଏକ ନିବିଡ଼ ଗୁଳ୍ମ କୁଞ୍ଜ ମଧ୍ୟରେ ଆତ୍ମ ଗୋପନ କରି ଥିଲେ ।

ଭକ୍ତ ଚୂଡ଼ାମଣି ବିଶର ମହାନ୍ତ ଏହି ତାତ୍ତ୍ୱିକ ସିଦ୍ଧାନ୍ତରେ ଦୃଢ଼ ନିଶ୍ଚିତ ଯେ ଜଗନ୍ନାଥ ରୂପୀ ଶ୍ରୀକୃଷ୍ଣ ଈଶ୍ୱର ସର୍ବମୟ କର୍ତ୍ତା ହେଲେ ମଧ୍ୟ ମାନବ ସୃଷ୍ଟିରେ ବିରାଜିତ ଥିବା ପର୍ଯ୍ୟନ୍ତ ସେ ସ୍ୱୀୟ ସୃଷ୍ଟ ମନୁଷ୍ୟ ଦ୍ୱାରା ସେବିତ, ପୂଜିତ ଏପରିକି ପାଳିତ । ସୁତରାଂ ବିଦେଶୀ ବିଜାତିଙ୍କ ଉତ୍ପୀଡ଼ନରୁ ନିଜର ଇଷ୍ଟଦେବଙ୍କର ସୁରକ୍ଷା କରି ନପାରିଲେ ଶ୍ରୀକୃଷ୍ଣଙ୍କ ପରି ଆଗ ସ୍ୱପରିବାରର ବିନାଶ ସାଧନ କରି ପରେ ନିଜେ ଆତ୍ମାହୃତି ଦେବେ । ଶ୍ରୀଯୁକ୍ତ ମହାନ୍ତିଙ୍କର ଏ ପ୍ରକାର ଚରମ ସଂକଳ୍ପରେ ପ୍ରଚ୍ଛନ୍ନ ଲକ୍ଷ୍ୟ ଥିଲା, ସ୍ୱେଚ୍ଛାମୟ ସର୍ବାନ୍ତର୍ଯ୍ୟାମୀ ତଥା ସର୍ବ ବ୍ୟାପକ ଶ୍ରୀଜଗନ୍ନାଥଙ୍କର ଅଚିନ୍ତ୍ୟ ଲୀଳା ଅନୁଭବ କରିବା ବହିରଙ୍ଗ ଜଗତର ଏକାନ୍ତ ଦୁର୍ବୋଧ୍ୟ ।

କ୍ରୁଦ୍ଧ କଳା ପାହାଡ଼ କେଜାଣି କାହିଁକି ଶ୍ରୀ ମୂର୍ତ୍ତିତ୍ରୟଙ୍କୁ ସେଠାରେ ଅଗ୍ନିଦଗ୍ଧ ବା ଅନ୍ୟ କୌଣସି ଉପାୟରେ ନଷ୍ଟ ନ କରି କୌଣସି ଏକ ସୁଦୂର ଗୋପନୀୟ ସ୍ଥାନକୁ ନେଇ ଏହି ଧ୍ୱଂସ କାର୍ଯ୍ୟ ସମାପ୍ତ କରିବାକୁ ମନେ ମନେ ସ୍ଥିର କଲେ ।

କଳାପାହାଡ଼ର ଶ୍ରୀ ଜଗନ୍ନାଥ ବିଗ୍ରହ ଦଗ୍ଧ ସ୍ଥାନ

ସମ୍ପର୍କରେ ନାନା ଐତିହାସିକ ନାନା ମତ ପୋଷଣ କରନ୍ତି । କେହି କେହି କହନ୍ତି, ଏହି କାର୍ଯ୍ୟ ପାରିକୁଦଠାରେ ହିଁ ହୋଇଥିଲା । କାହାର କାହାର ମତରେ ପାରାଦ୍ୱୀପଠାରେ ଶ୍ରୀମୂର୍ତ୍ତିଙ୍କୁ ଦଗ୍ଧ କରି ଯାଇଥିଲା । ଗବେଷଣାମୂଳକ ଐତିହାସିକ ମତାନୁଯାୟୀ ଉତ୍କଳର ତତ୍କାଳୀନ ଉତ୍ତର ସୀମନ୍ତ ୨୪ ପ୍ରଗଣା କଲିକତା ଗଙ୍ଗା ନଦୀ ତୀରବର୍ତ୍ତୀ ତ୍ରିବେଣୀ ଘାଟ ଠାରେ କଳାପାହାଡ଼ ଶ୍ରୀ ଜଗନ୍ନାଥ ବିଗ୍ରହଙ୍କୁ ଭସ୍ମୀଭୂତ କରିଥିଲା । କିନ୍ତୁ ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ଦ୍ୱୟ ସେହି ପାରିକୁଦ ଠାରେ ହିଁ ଦଗ୍ଧୀଭୂତ ହୋଇଥିଲେ ।

କଳାପାହାଡ଼ର ଏହି ଅଭିଯାନର ପଥ ପ୍ରତି ଲକ୍ଷ୍ୟ ଦିଆଗଲେ ଜଣାଯିବ, ସେ ପୂର୍ବ ଓଡ଼ିଶା ମଧ୍ୟ ଦେଇ ବାରମ୍ବାର କୌଶିକ ଯାତ୍ରା କରି ତାଙ୍କର ଉଦ୍ଦେଶ୍ୟ ସାଧନ କରୁଥିଲେ । ଚିଲିକା ଠାରୁ ପୁନର୍ବାର ପୂର୍ବ ପଥରେ ନ ଫେରି ସେ ପଶ୍ଚିମ ଓଡ଼ିଶା ମଧ୍ୟ ଦେଇ ସେହିପରି ଦୀର୍ଘ୍ୟକ ଗତିରେ ବଙ୍ଗଳା ଫେରିଥିଲେ । ସୁତରାଂ ପାରାଦ୍ୱୀପ ଠାରେ ଶ୍ରୀ ଜଗନ୍ନାଥଙ୍କୁ ଦଗ୍ଧ କରିଯିବାର ଅବକାଶ ରହୁନାହିଁ । ସମ୍ଭବତଃ ଶ୍ରୀ ଜଗନ୍ନାଥଙ୍କ ଠାରେ ମନ ଇଚ୍ଛା ଦାଉ ସାଧିବା ଓ ବହୁ ସଂଖ୍ୟକ ମୁସଲମାନଙ୍କୁ ଏହି ବିକଟ ଦୃଶ୍ୟ ଦେଖାଇ ଆନନ୍ଦିତ ତଥା ପ୍ରୋତ୍ସାହିତ କରିବା ତାହାଙ୍କର ଉଦ୍ଦେଶ୍ୟ ଥିଲା । ତେଣୁ ତ୍ରିବେଣୀ ଘାଟ ଠାରେ ଶ୍ରୀ ଜଗନ୍ନାଥ ବିଗ୍ରହଙ୍କୁ ସେ ଦଗ୍ଧ କରିବା ସପକ୍ଷରେ ଯୌକ୍ତିକତା ରହିଛି ।

ପଶ୍ଚିମ ଓଡ଼ିଶା ପଥ ଦେଇ କଳାପାହାଡ଼ ନିଜ ବାହିନୀ ସହ ବଙ୍ଗଳାରେ ପହଞ୍ଚିଲେ । ମହାନ୍ ସାହସୀ ବୀର ମହାନ୍ତି ଏକଜଣ

ଆତ୍ମୋତ୍ସର୍ଗକାମୀ ସାହସୀ ପଣ୍ଡାଙ୍କ ସହିତ କଳାପାହାଡ଼ ବାହିନୀର ପଶ୍ଚାଦ୍ଧାବନ କରିବାକୁ ଲାଗିଲେ । ବଙ୍ଗ ଭୂମିରେ ପ୍ରବେଶକରି ଗଙ୍ଗା ନଦୀ କୂଳରେ ତ୍ରିବେଣୀ ଘାଟଠାରେ ଶ୍ରୀମୂର୍ତ୍ତିଙ୍କୁ ଭସ୍ମିଭୂତ କରିବା ଲାଗି କଳାପାହାଡ଼ ଆୟୋଜନ କରିବାକୁ ଲାଗିଲେ । ତାହାଙ୍କର ଆଦେଶମାତ୍ରେ ଜାଳିଲଣି କାଷ୍ଠ, ଇନ୍ଧନ, ତୈଳାଦି ସଂଗୃହୀତ ହୋଇ ଚିତା ମଧ୍ୟରେ ଶ୍ରୀମୂର୍ତ୍ତିଙ୍କୁ ପ୍ରଚୁର କାଷ୍ଠ ମଧ୍ୟସ୍ଥ କରି ଅଗ୍ନି ସଂଯୋଗ କରାଗଲା । ଯଥାଶୀଘ୍ର ଭସ୍ମିଭୂତ ହେବା ନିମିତ୍ତ ବାରମ୍ବାର ତୈଳାହୂତି ଦିଆଯାଉ ଥାଏ । କାଳାଗ୍ନି ତାହାର ଲେଲିହାନ ଶିଖା ବିସ୍ତାର କରି ଆକାଶ ସ୍ପର୍ଶୀ ହେବା-ଲାଗି ଧୁ ଧୁ ପ୍ରଜ୍ୱଳିତ ହେବାକୁ ଲାଗିଲା । କାଳାଗ୍ନି ନିଜ ଶରୀରକୁ ବହୁ ସ୍ତର ମୂଲ୍ୟବାନ ସାମରିକ ପରିଚ୍ଛଦରେ ଆବୃତ୍ତ କରି ପରମ କୌତୂହଳତାର ସହିତ ନିଜ ବାହିନୀ ମଧ୍ୟରେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ।

କିନ୍ତୁ ଏ କ'ଣ ହେଲା ! ସହସା ଚିତା ମଧ୍ୟରୁ ଏକ ଭୀଷଣ ଶବ୍ଦରେ ବିସ୍ଫୋରଣ ଘଟି ସଙ୍ଗେ ସଙ୍ଗେ ଏକ ତୈଳାକ୍ତ ଅଗ୍ନିପିଣ୍ଡ ଅଗ୍ନିରାଶି ମଧ୍ୟରୁ ଉତ୍କ୍ଷିପ୍ତ ହୋଇ କଳାପାହାଡ଼ଙ୍କର ବକ୍ଷସ୍ଥଳରେ ଛୁଟିକା ଲାଗିଲା । ନିମିଷେକ ମଧ୍ୟରେ ସହଜ ଦାହ୍ୟ ଚିକ୍କଣ ଓ ପଶମି ପୋଷାକଗୁଡ଼ିକରେ ଅଗ୍ନି ସଂକ୍ରମିତ ହୋଇ କଳାପାହାଡ଼ର ସର୍ବାଙ୍ଗ ପ୍ରଜ୍ୱଳିତ ହେଲା ଏବଂ ଆର୍ତ୍ତଚିତ୍କାରର ଭୟାନକ ଶବ୍ଦ ସହ କଳାପାହାଡ଼ଙ୍କର ଉଦର ବିଦୀର୍ଣ୍ଣ ହୋଇ ଶରୀରସ୍ଥ ଅନ୍ତ୍ରାଦି ବହିର୍ଗତ ହେଲା । ଏହି ଅଗ୍ନି ଛୁଟିକାରେ ଅନ୍ୟ କେତେକ ସୈନିକ ମଧ୍ୟ ଆକ୍ରାନ୍ତ ହେବାରୁ ଅନ୍ୟ ସମସ୍ତେ ସେ ସ୍ଥାନ ପରିତ୍ୟାଗ କରି ପଳାୟନ କଲେ ।

ଦୁଃସାହସୀ ଶ୍ରୀ ବିଶର ମହାନ୍ତି ପଣ୍ଡା ବନ୍ଧୁଙ୍କ ସହ ଛଦ୍ମ ବେଶରେ ଅନତି ଦୂରବର୍ତ୍ତୀ ଏକ ଟୋଟା ମଧ୍ୟରେ ଏହିସବୁ ମର୍ମନ୍ତୁଦ ବ୍ୟାପାର ନିରୀକ୍ଷଣ କରୁଥିଲେ । ଚିତା ସ୍ଥାନଟି ନିରାପଦ ଦେଖି ସଙ୍ଗେ ସଙ୍ଗେ ସେଠାକୁ ଧାଇଁଗଲେ । ଆଶ୍ଚର୍ଯ୍ୟର କଥା ଯେ ଶ୍ରୀ ଜଗନ୍ନାଥ ବିଗ୍ରହଙ୍କର ଅନ୍ୟ ସମସ୍ତ ଅଂଶ ଦଗ୍ଧୀଭୂତ ହୋଇଥିଲେ ମଧ୍ୟ ନାଭିପଦ୍ମ ଅଂଶଟି ଜାହ୍ନବୀଙ୍କ ମାନଭାବେ ଅକ୍ଷୁର୍ଣ୍ଣ ଥିଲେ । ଶ୍ରୀ ମହାନ୍ତି ଅତ୍ୟନ୍ତ ସାବଧାନତାର ସହିତ ଶ୍ରୀ ଜଗନ୍ନାଥଙ୍କ ନାଭି ପଦ୍ମକୁ ନିଜ ପ୍ରାଣଠାରୁ ଅଧିକତର ଯତ୍ନରେ ଚିତା ମଧ୍ୟରୁ ଉତ୍ତୋଳନ କରି ସାଥୀ ପଣ୍ଡାଙ୍କ ସହ ସେ ସ୍ଥାନ ପରିତ୍ୟାଗ କଲେ । ବଙ୍ଗ ରାଜ ର କେତେକ ହିନ୍ଦୁ ବନ୍ଧୁଙ୍କ ସହଯୋଗରେ ମହାପ୍ରଭୁଙ୍କର ଅକ୍ଷୟ ନାଭିବ୍ରହ୍ମଙ୍କୁ ଏକ ମୃଦଙ୍ଗ ଖୋଳ ମଧ୍ୟରେ ଲୁକ୍କାୟିତ ରଖି ଉଭୟେ ସାଗର ବେଳାଭୂମିର ବୀରଦଣ୍ଡକୁଳ ମାଝାଡ଼ପୂର୍ଣ୍ଣ ଜଙ୍ଗଲର ଗଳି କନ୍ଧି ପଥ ଦେଇ ଅବଶେଷରେ ଉତ୍କଳ ରାଜ୍ୟର ବଙ୍ଗୋପସାଗର ସଂଲଗ୍ନ କୁଜଙ୍ଗ ରାଜାଙ୍କ ପାରାଦ୍ୱୀପ ଗଡ଼ରେ ଉପନୀତ ହେଲେ ।

ଓଡ଼ିଆ ଜାତିର ଆତ୍ମା ଶ୍ରୀ ଜଗନ୍ନାଥଙ୍କର ନାଭି ବ୍ରହ୍ମ ପାରଦ୍ୱୀପକୁ ଆଗତ ହୋଇଥିବା ସୁସମ୍ବାଦ ପ୍ରାପ୍ତି ମାତ୍ରେ କୁଜଙ୍ଗର ତାତ୍‌କାଳୀନ ଭକ୍ତିପରାୟଣ ରାଜା ବିଦ୍ୟାଧର କ୍ଷେତ୍ରଙ୍କର ପିତା ଅତି ଗୋପନରେ ସହିତ ପୂଜ୍ୟ ବିଶର ମହାନ୍ତି, ପଣ୍ଡା ଠାକୁର ଓ ଶ୍ରୀ ବ୍ରହ୍ମ ସତ୍ତାଙ୍କୁ ତାହାଙ୍କର ରାଜଧାନୀ ଗଡ଼ କୁଜଙ୍ଗକୁ ନିରାଡ଼ମ୍ବର ଭାବେ ନେଇ ଆସିଲେ । ସେଠାରୁ ନୀଳାଚଳନାଥଙ୍କର ବ୍ରହ୍ମସତ୍ତାଙ୍କୁ ସ୍ୱଧାମ ପ୍ରେରଣ ପର୍ଯ୍ୟନ୍ତ ତିନିବର୍ଷ ଅବସ୍ଥାନ ସମୟରେ ଯଥାରୀତି ନୈବେଦ୍ୟ ନୀତିକାର୍ଯ୍ୟ ରାଜା ସୁଚାରୁରୂପେ ସମାହିତ କରାଇଥିଲେ ।

ତତ୍ପରେ ନିଜର ଜଣେ ଦକ୍ଷ ଅଶ୍ୱାରୋହୀ ଦୂତ ଦ୍ୱାରା ଏହି ସୁସମ୍ବାଦ ଖୋର୍ଦ୍ଧାର ସାମନ୍ତ ରଜାଙ୍କ ନିକଟକୁ ପ୍ରେରଣ କଲେ । ଏହାପରେ ଭାବେ ଶ୍ରୀ ବ୍ରହ୍ମ ସତ୍ୱ ଶ୍ରୀମନ୍ଦିରକୁ ନୀତ ହୋଇଥିଲେ ଏବଂ ବିଗ୍ରହ ନିଚୟଙ୍କର ନବକଳେବର ପ୍ରସ୍ତୁତ କରାଯାଇ ରତ୍ନ ସିଂହାସନରେ ପୁନଃପ୍ରତିଷ୍ଠା କରାଯାଇ ଥିଲା । ସମ୍ଭବତଃ ଭକ୍ତ ବିଶର ମହାତ୍ମାଙ୍କ ନିକଟରେ ଶ୍ରୀ ଜଗନ୍ନାଥ ଏହି ଲୀଳା ମାଧ୍ୟମରେ ପରୋକ୍ଷେ ଋଣ୍ଣି ହୋଇଥିଲେ ।

ହିନ୍ଦୁଦସ୍ତ ପାଠକ ମହାଶୟ ଆପଣ ଯଦି ଅହିନ୍ଦୁ ହୋଇ ଥାନ୍ତି, ବୋଧହୁଏ ଏହି ପ୍ରସଙ୍ଗଟି ଆପଣଙ୍କ ମନରେ ଏକ ଅସନ୍ତୁଷ୍ଟାତ୍ମକ ପ୍ରତିହିଂସା ଭାବ ଉଦ୍ରେକ କରାଇ ପାରେ, କିନ୍ତୁ ଯେଉଁ ବାସ୍ତବ ମାନବୀୟ ଦୃଷ୍ଟିଭଙ୍ଗୀ ନେଇ ଏହି କ୍ଷୁଦ୍ର ପୁସ୍ତିକାଟି ଲିଖିତ ହୋଇଛି, ତତ୍ପ୍ରତି ଯଦି ଆପଣ ପୂର୍ଣ୍ଣତଃ ସହାନୁଭୂତିଶୀଳ ବା ନିରପେକ୍ଷ ଥାଆନ୍ତି ତେବେ ନିଶ୍ଚିତରୂପେ ଆପଣ ଅନୁଭବ କରିବେ ଯେ, ହିନ୍ଦୁ ଧର୍ମର କୌଣସି ବ୍ୟକ୍ତି ବା ଗୋଷ୍ଠୀ ଦ୍ୱାରା ଯଦି କଳାପାହାଡ଼ଙ୍କ ପରି ଅନୁରୂପ ଅମାନୁଷିକ କାର୍ଯ୍ୟ କରାଯାଇ ଥାନ୍ତା, ସେମାନେ ମଧ୍ୟ ଏ ପ୍ରକାର ଦୁର୍ଗତିରୁ କ୍ଷମା ପାଇ ନ ଥାନ୍ତେ । ଏହା ଏକ ନିରାଟ ସତ୍ୟ ଯେ, ଏକ ଧର୍ମର ଈଶ୍ୱର ଶକ୍ତି ଅନ୍ୟ ଏକ ଧର୍ମରେ ବିରୋଧ ଭାବ ବୁଝାଇବ ନାହିଁ । କିମ୍ବା କୌଣସି ଏକ ଭାଷାରେ ବିଷ ନାମରେ ନାମିତ ବସ୍ତୁ ଅନ୍ୟ ଭାଷାଭାଷୀ ମାନବ ଗୋଷ୍ଠୀକୁ ଅମୃତତତ୍ତ୍ୱ ପ୍ରଦାନ କରି ପାରିବ ନାହିଁ । ସତ୍ୟ, ଶିବ; ସୁନ୍ଦର ଭଗବାନଙ୍କର ସର୍ବ ଜୀବ ପ୍ରତି ସମାନ କରୁଣା । ତାରତମ୍ୟ ବୋଧ ବିଭ୍ରାନ୍ତତା ମାନବ-ବିବେକର ବୃତ୍ତି ମାତ୍ର ।

ଶ୍ରୀ ଜଗନ୍ନାଥଙ୍କର ନାଭିପଦ୍ମ ଗଡ଼ କୁଜଙ୍ଗର ଯେଉଁ ପବିତ୍ର ସ୍ଥାନରେ ଗୋପନରେ ପ୍ରକଟ ହୋଇଥିଲେ, କୁଜଙ୍ଗର ଭକ୍ତିପରାୟଣ ରାଜା ଏହି ଶ୍ରେଷ୍ଠ ସ୍ମୃତିକୁ ଚିର ପ୍ରକଟ ରଖିବା ଉଦ୍ଦେଶ୍ୟରେ ସେଠାରେ ଏକ ମନ୍ଦିର ନିର୍ମାଣ କରି, ଶ୍ରୀଧାମ ପୁରୀରୁ ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରାଙ୍କର ଦାରୁ ମୂର୍ତ୍ତି ପ୍ରସ୍ତୁତ କରି ବିଧିପୂର୍ବକ ସେଠାରେ ସଂସ୍ଥାପିତ କରାଇଥିଲେ ।

ନିଜର ସାମର୍ଥ୍ୟାନୁଯାୟୀ ରାଜା ବିଗ୍ରହମାନଙ୍କର ସେବା, ପୂଜା ଓ ପର୍ବପର୍ବାଣୀର ଯଥାଯଥ ବ୍ୟବସ୍ଥା ମଧ୍ୟ କରିଥିଲେ । ଶ୍ରୀ ଜଗନ୍ନାଥଙ୍କର ରଥଯାତ୍ରା କୁଜଙ୍ଗ ଗଡ଼ରେ ଏହି ସମୟରୁ ହିଁ ଆରମ୍ଭ ହୋଇଥିଲା । ଏ ଅଞ୍ଚଳର ଲୋକେ କୁଜଙ୍ଗ ରଥ ଯାତ୍ରାକୁ ସାକ୍ଷାତ ଜଗନ୍ନାଥଙ୍କ ରଥଯାତ୍ରା ବୋଲି ବିଶ୍ୱାସ କରନ୍ତି । ଲୋକେ ସେତେବେଳର ଆୟାସକର ତଥା ଆପଦଜନକ ପଦଯାତ୍ରା ଯୋଗେ ଶ୍ରୀକ୍ଷେତ୍ରକୁ ନ ଯାଇ ବିପୁଳ ସଂଖ୍ୟାରେ କୁଜଙ୍ଗ ରଥଯାତ୍ରାରେ ଯୋଗ ଦେଉଥିଲେ । ଏହାହିଁ ଥିଲା କୁଜଙ୍ଗ ରଥ ଯାତ୍ରାର ବୈଶିଷ୍ଟ୍ୟ ।

ପ୍ରଥମେ ଶ୍ରୀ ନୀଳାଚଳ ରଥ ଯାତ୍ରା ଅନୁସରଣରେ ଏଠାରେ ତିନି ଠାକୁରଙ୍କର ତିନି ରଥ ଅନୁଷ୍ଠିତ ହେଉଥିଲେ । ସମୟକ୍ରମେ ତାହା ଏକ ରଥରେ ପରିଣତ ହୋଇଅଛି ।

ଭାରତ ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପରେ ପରେ ପାଞ୍ଚ କିଲୋଗ୍ରାମ ଓଜନ ବିଶିଷ୍ଟ କୁଜଙ୍ଗ ଅଧିଷ୍ଠାତ୍ରୀ ଶ୍ରୀ କନକ ଦୁର୍ଗାଙ୍କର ସ୍ୱର୍ଣ୍ଣମୟୀ ବିଗ୍ରହ, ଦସ୍ୟୁମାନଙ୍କ ଦ୍ୱାରା ଅପହୃତ ହୋଇଛନ୍ତି । ସମ୍ପ୍ରତି କୁଞ୍ଜବିହାରୀ ତାହାଙ୍କର ଜୀର୍ଣ୍ଣ ମନ୍ଦିରରେ

ପୂଜିତ ହୋଇ ରାଜଧାନୀର ମୂଳ ସାକ୍ଷୀ ରୂପେ ଗଡ଼ର କେନ୍ଦ୍ରରେ ବିରାଜମାନ କରିଅଛନ୍ତି ।

ଭାରତବର୍ଷରେ ଉତ୍କଳ ଏକ ମନ୍ଦିରମାଳିନୀ ରାଜ୍ୟ ରୂପେ ଖ୍ୟାତ । ସୁଦୂର ଅତୀତର କେଉଁ ସମୟରୁ ଭାରତୀୟ ଧର୍ମ ଓ ସଭ୍ୟତାରେ ମନ୍ଦିରର ପ୍ରାଚୁର୍ଯ୍ୟ ଗଢ଼ି ଉଠିଥିଲା, ତାହାର ଐତିହାସିକ ତଥ୍ୟ ଏଠାରେ ସଂକ୍ଷିପ୍ତ ଉଲ୍ଲେଖ କରାଯାଉ ଅଛି ।

ଆର୍ଯ୍ୟମାନଙ୍କର ପ୍ରଥମ ବସତି ସ୍ଥଳ ଆର୍ଯ୍ୟାବର୍ତ୍ତରେ । କ୍ରମଶଃ ଏମାନଙ୍କର ବଂଶ ବୃଦ୍ଧି ଘଟିବାରୁ ପଶ୍ଚିମରେ ସିନ୍ଧୁ ଉପତ୍ୟକା ଠାରୁ ଆରମ୍ଭ କରି ପୂର୍ବରେ ବ୍ରହ୍ମପୁତ୍ରର ପଶ୍ଚିମାଂଶ ପର୍ଯ୍ୟନ୍ତ ସମଗ୍ର ଉତ୍ତର ଭାରତରେ ଆର୍ଯ୍ୟ ବସତି ପ୍ରତିଷ୍ଠା ଲାଭ କରିଥିଲା । ଏହି ବିରାଟ ଭୂଖଣ୍ଡର ଅଧିବାସୀଙ୍କୁ ଏକ ଧର୍ମୀୟ ନିୟନ୍ତ୍ରଣାଧୀନରେ ରଖିବାର ପ୍ରଚେଷ୍ଟା ଫଳରେ ଏହି ସମୟରୁହିଁ ବେଦକୁ ଲିପିବଦ୍ଧ କରା ଯାଇଥିଲା ଓ ସମାଜରେ ବ୍ରାହ୍ମଣ; କ୍ଷତ୍ରୀୟ, ବୈଶ୍ୟ ଏହି ତିନି ଶ୍ରେଣୀ ବା ଜାତିର ସୃଷ୍ଟି ହେଲା ।

ଏହି ବୈଦିକ ଯୁଗର ଆରମ୍ଭ ସମ୍ପର୍କରେ ବିଭିନ୍ନ ଐତିହାସିକମାନେ ଯେଉଁ ଭିନ୍ନ ଭିନ୍ନ ମତ ବ୍ୟକ୍ତ କରିଛନ୍ତି; ତାହା ଆର୍ଯ୍ୟ ପୁରାଣ, ଇତିହାସର ସମର୍ଥନ ଲାଭ କରୁନାହିଁ । କାରଣ ବେଦର ଇତିହାସ ବେଦ, ବେଦର ରଚୟିତା ମଧ୍ୟ ବେଦ । କୌଣସି ଏକ ସମୟରେ ଅଥବା ଏକ କିମ୍ବା ଏକାଧିକ ମନୀଷୀଙ୍କ ଦ୍ୱାରା ବେଦ ରଚିତ ହୋଇ ଥିବାର ସ୍ପଷ୍ଟୀକରଣ କୌଣସିଠାରେ ଲିଖିତ ଥିବାର ଦୃଷ୍ଟିଗୋଚର ହୁଏ ନାହିଁ । ପରନ୍ତୁ, ମଧ୍ୟ ଏସିଆର

ଆର୍ଯ୍ୟ ସମାଜରେ 'ବେଦ' ଶ୍ରୁତି ମାଧ୍ୟମରେ ପ୍ରଚଳିତ ଥିଲା ବୋଲି ଶାସ୍ତ୍ରୀୟ ପ୍ରମାଣମାନ ଦୃଷ୍ଟିଗୋଚର ହୁଏ ।

ପରବର୍ତ୍ତୀ ଯୁଗରେ ବେଦର ଗୂଢ଼ାର୍ଥବୋଧକ ଭାଷା ସ୍ୱରୂପ ସଂହିତା ଓ ଉପନିଷଦାବଳୀ ବିଭିନ୍ନ ସମୟରେ ବିଭିନ୍ନ ମୁନି ଋଷିଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ବୈଦିକ ଯୁଗର ପ୍ରାକ୍-କାଳରେ ଉତ୍ତର ଭାରତରୁ ଭାରତୀୟ ଆଦିମ ଅଧିବାସୀମାନଙ୍କର ସଂଖ୍ୟା ବିପୁଳ ପରିମାଣରେ ହ୍ରାସ ହୋଇଥିଲେ ମଧ୍ୟ ଯେଉଁ ସ୍ୱଳ୍ପ ସଂଖ୍ୟକ ଆଦିବାସୀ ଆର୍ଯ୍ୟାବର୍ତ୍ତ ମଧ୍ୟରେ ରହିଗଲେ, ସେହିମାନେହିଁ ଶୂଦ୍ର ନାମରେ ଆଖ୍ୟାତ ହେଲେ । ଆର୍ଯ୍ୟ ସମାଜରେ ଏହିମାନେ ଚତୁର୍ଥ ଜାତି ରୂପେ ପରିଚିତ ।

କାଳର ପ୍ରବାହ ଅନାଦି ଓ ଅନନ୍ତ । ସମୟର ଆରମ୍ଭ ନାହିଁ କି ଶେଷ ମଧ୍ୟ ନାହିଁ । ଏଣୁ ଆର୍ଯ୍ୟ ଋଷିଗଣ ସ୍ଥୁଳତଃ ସମୟକୁ ଚାରି ଭାଗରେ ବିଭକ୍ତ କରି ଚତୁର୍ଯୁଗାତ୍ମକ ଭିତ୍ତିରେ ଏହାକୁ ନିୟନ୍ତ୍ରଣାଧୀନ କରି ପାରିଛନ୍ତି । ଏହା ଫଳରେ କାଳର ଅସୀମ ଅନନ୍ତତ୍ୱ ମାନବ ଜ୍ଞାନ ପରିସର ମଧ୍ୟରେ ସୀମିତ ହୋଇ ପାରିଛି ।

ଯେତେଦୂର ମନେହୁଏ ଉତ୍ତର ଭାରତରେ ଆର୍ଯ୍ୟାବର୍ତ୍ତ-ଯୁଗୀୟ ସଭ୍ୟତାକୁ ସତ୍ୟ ଯୁଗ ନାମରେ ଅଭିହିତ କରାଯାଇଛି । ଏହି ଯୁଗର ଶେଷାଂଶରୁ ବଂଶ ବୃଦ୍ଧି କାରଣରୁ ଆର୍ଯ୍ୟବସତି ଦକ୍ଷିଣ ଭାରତକୁ ସଂପ୍ରସାରିତ ହୋଇଥିଲା । ସେତେବେଳେ ଦକ୍ଷିଣ ଭାରତ ସୁଶିକ୍ଷିତ ଦ୍ରାବିଡ଼ ଅଧ୍ୟୁଷିତ ଅଞ୍ଚଳ ବା ଦ୍ରାବିଡ଼ ରାଷ୍ଟ୍ରରୂପେ ଖ୍ୟାତ ଥିଲା । ଉଭୟେ ଉଭୟଙ୍କ ସଭ୍ୟତା, ସଂସ୍କୃତିରେ ଆକୃଷ୍ଟ ହେବା ଫଳରେ ଦୁଇ ଜାତି ମଧ୍ୟରେ ଧର୍ମ ଓ

ସାଂସ୍କୃତିକ ସମନ୍ୱୟ ସ୍ଥାପିତ ହୋଇ ଏକ ନୂତନ ଯୁଗର ସୂତ୍ରପାତ ହେଲା । ଭଗବାନ ରାମଚନ୍ଦ୍ରଙ୍କର ସୁଗ୍ରୀବଙ୍କ ସହ ମିତ୍ରତା ସ୍ଥାପନ ଓ ଲଙ୍କାଭିଯାନରେ ଦକ୍ଷିଣ ଭାରତୀୟ ଦ୍ରାବିଡ଼ ବାହିନୀର ସହଯୋଗିତା, ତତ୍କାଳୀନ ଘଟଣାବଳୀର ଉପସଂହାର ଅଟେ ।

ରାମାୟଣ ସଭ୍ୟତା ଏ ଯୁଗର ଚରମ ନିଦର୍ଶନ । ଏହା ତ୍ରେତା ଯୁଗ ନାମରେ ଖ୍ୟାତ । ବିଶ୍ୱର ଆଦି କବି ମହର୍ଷି ବାଲ୍ମୀକଙ୍କ ରଚିତ ରାମାୟଣ, ଏ ଯୁଗର ବିଶ୍ୱବାସୀଙ୍କୁ ପ୍ରଥମ କାବ୍ୟ ଅବଦାନ ।

ଏହାପରେ ଭାରତରେ ଆରମ୍ଭ ହେଲା ଏକ ପୌରାଣିକ ଯୁଗ । ଆର୍ଯ୍ୟ, ଦ୍ରାବିଡ଼ ଓ ଭାରତୀୟ ଆଦିମ ଅଧିବାସୀଙ୍କର, ଧର୍ମ, ସଭ୍ୟତା, ସଂସ୍କୃତିର ମହାମିଳନ ଫଳରେ ଏକ ଅଭିନବ ମହାଭାରତୀୟ ଜାତି, ଅଭ୍ୟୁତ୍ଥିତ ହେଲା । ଏହି ଜାତି ସମୂହର ଧର୍ମ, ଆଚାର, କାହାଣୀ, କିମ୍ବଦନ୍ତୀ, ସାମାଜିକ ରୀତି ନୀତି ସବୁକୁ ଅବଲମ୍ବନ କରି, ନାନା ପୁରାଣ, ଉପପୁରାଣ, ନୀତି ଶାସ୍ତ୍ର ସମୂହ, ବିଭିନ୍ନ ସାଧକ, ମନୀଷୀ ତଥା ସାହିତ୍ୟିକ କବିମାନଙ୍କ ଦ୍ୱାରା ରଚିତ ହେଲା ।

ମହାଭାରତୀୟ ଯୁଗର ଅନ୍ୟ ନାମ ଦ୍ୱାପର ଯୁଗ । ଏ ଯୁଗର ଶେଷଭାଗକୁ ଶ୍ରୀ ଭଗବାନଙ୍କର ଏକ ଭଗବଦାଂଶ ନେଇ ବେଦବ୍ୟାସ କୃଷ୍ଣ ଦ୍ୱୈପାୟନଙ୍କର ଆବିର୍ଭାବ ଘଟିଥିଲା । ବେଦ ବିଭକ୍ତିକରଣ, ସଂହିତା, ତନ୍ତ୍ର ଶାସ୍ତ୍ର, ଅଷ୍ଟାଦଶ ପୁରାଣ, ମହାଭାରତ ଗ୍ରନ୍ଥ, ଶ୍ରୀମଦ୍ଭାଗବତ ଗୀତା ଏବଂ ସର୍ବଶେଷରେ ମହାପୁରାଣ ଶ୍ରୀମଦ୍ଭାଗବତ ଆଦି ଧର୍ମଗ୍ରନ୍ଥମାନ ପର୍ଯ୍ୟାୟକ୍ରମେ ଏହାଙ୍କ ଦ୍ୱାରା

ପ୍ରଣୀତ ହୋଇଥିଲା । ଏହାଙ୍କୁ ଭଗବାନଙ୍କ ଅବତାର ଆସନ ଦେବାର କାରଣ, ସହଜେ ଅନୁମେୟ । ଯେହେତୁ, ଯେ କୌଣସି ସାଧାରଣ ଋଷାବର୍ତ୍ତ ବା ଜ୍ଞାନୀ କାବ୍ୟକାରଙ୍କ ପକ୍ଷେ; ଏକ ଜୀବନ କାଳ ମଧ୍ୟରେ ଆତ୍ମ ଜ୍ଞାନପ୍ରଦ, ଏଭଳି ସହସ୍ରାଧିକ ଗ୍ରନ୍ଥ ପ୍ରଣୟନ କରିବା ଏକାନ୍ତ ଦୁଃସାଧ୍ୟ ।

ତୃତୀୟ ପାଣ୍ଡବ ଅର୍ଜ୍ଜୁନଙ୍କ ପ୍ରପୌତ୍ର "ଜନ୍ମେଜୟ"ଙ୍କ ରାଜତ୍ୱ କାଳର ଶେଷ ଭାଗରେ ଦ୍ୱାପର ଯୁଗର ଅବସାନ ଘଟିଥିଲା ବୋଲି, ଶ୍ରୀମଦ୍ଭାଗବତ ଗ୍ରନ୍ଥାଦିରେ ସ୍ପଷ୍ଟ ଉଲ୍ଲେଖ ଅଛି । ଏହି ସବୁ ପ୍ରାଚୀନ ଯୁଗମାନଙ୍କରେ ସଂଘଟିତ ଘଟଣାବଳୀର ସମୟ ଜ୍ଞାପକ ସାଲ, ଶତାବ୍ଦୀର ସଠିକତା ପ୍ରଦାନ କରିବା ଯେ କୌଣସି ବିଶାରଦଙ୍କ ପକ୍ଷେ ସାଧ୍ୟାତୀତ । କେବଳ ତ୍ରିକାଳଜ୍ଞ ମୁନି, ଋଷିମାନଙ୍କ ଦ୍ୱାରା ସିଦ୍ଧାନ୍ତ ଯୁଗ ଚକ୍ର ମଧ୍ୟରେ ପୌରାଣିକ ଘଟଣା ପ୍ରବାହର କ୍ରମିକତା, ମାନବ ଧାରଣାକୁ ଅଣାଯାଇଅଛି ।

ଭାରତ ବର୍ଷରେ ବିଗ୍ରହ ଉପାସନା ଓ ମନ୍ଦିରର ବହୁଳତାର ସଂକ୍ଷିପ୍ତ କାରଣ ଦର୍ଶାଇବା ଉଦ୍ଦେଶ୍ୟରେ ଉପଯୁକ୍ତ ଐତିହାସିକ ତଥ୍ୟ ନହିଁତ ପୌରାଣିକ ସୂତ୍ର ସମ୍ବଳିତ ବିଷୟା-ବଳୀର ଏକ ସ୍ଥୂଳ ବିବୃତ୍ତି ଏଠାରେ ପ୍ରଦାନ କରାଗଲା ।

ଭଗବାନ ଶ୍ରୀ ରାମଚନ୍ଦ୍ର ଲଙ୍କା ଅଭିଯାନ ପୂର୍ବରୁ, ଆଧୁନିକ ରାମନାଥପୁର ନିକଟରୁ ଲଙ୍କା ପର୍ଯ୍ୟନ୍ତ ଏକ ପ୍ରସ୍ତର ସେତୁ ନିର୍ମାଣ କରିଥିଲେ । ଏହି ସେତୁର ଆନୁଷ୍ଠାନିକ ପ୍ରତିଷ୍ଠା ଓ ଅଭିଯାନର ଶୁଭ କାମନା କରି ସେ ସ୍ୱହସ୍ତରେ ଶିର ଖୋଦିତ ଏକ ଶିବଲିଙ୍ଗ ସ୍ଥାପନ କରିଥିଲେ । ଏହି ଶିବଲିଙ୍ଗ, ହିନ୍ଦୁର

ସୃଷ୍ଟିଧାମ ତୀର୍ଥଯାତ୍ରୀମାନଙ୍କ ମଧ୍ୟରେ "ରାମନାଥ" ନାମରେ ପ୍ରସିଦ୍ଧ । ଆଶ୍ୱିନ ମାସ ଶୁକ୍ଳ ଦଶମୀ ତିଥିରେ ସର୍ବଶକ୍ତିମୟୀ ଦଶଭୁଜା ଦୁର୍ଗାଦେବୀଙ୍କର ଉପାସନା ସମାପନ ପୂର୍ବକ, ରାମଚନ୍ଦ୍ର ଦ୍ୱାବିଡ ବାହିନୀ ଯୋଗେ ଲଙ୍କାକୁ ବିଜୟ ଯାତ୍ରା ଆରମ୍ଭ କରିଥିଲେ । ଏହାହିଁ ହେଲା ବିଶ୍ୱର ସର୍ବ ପ୍ରଥମ ବୈଦିକ ମୂର୍ତ୍ତି ପୂଜା । ଏହା-ପରେ ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞ ସମୟରେ, ନର୍ବାସିତା ସୀତା ଦେବୀଙ୍କର ସ୍ୱର୍ଣ୍ଣମୟୀ ମୂର୍ତ୍ତି ପ୍ରତିଷ୍ଠା ଦ୍ୱାରା ଯଜ୍ଞାନୁଷ୍ଠାନ ସମାହିତ ହୋଇଥିଲା । ସନାତନୀ ସମାଜରେ ବିଗ୍ରହ ଉପାସନାର ଦୃଷ୍ଟାନ୍ତ ଏହିଠାରୁହିଁ ପ୍ରଥମେ ମିଳେ ।

ପୌରାଣିକ ତଥ୍ୟାନୁଯାୟୀ ରାମାୟଣ ଘଟଣାବଳୀ ତ୍ରେତା-ଯୁଗର ଶେଷ ସହସ୍ରାବ୍ଦର ଇତିବୃତ୍ତି । ରାମାୟଣ ଯୁଗ ପରେ, ଦ୍ୱାପର ଯୁଗ ଆଠ ଲକ୍ଷ ୬୪ ହଜାର ବର୍ଷ ଏବଂ କଳିଯୁଗର ୫୦୭୮ ବର୍ଷ ଅତୀତ ହୋଇ ଯାଇଛି । ସୁତରାଂ ରାମଚନ୍ଦ୍ରଙ୍କ କର୍ତ୍ତୃକ ରାମେଶ୍ୱର ଲିଙ୍ଗ ପ୍ରତିଷ୍ଠା ଓ ଅସାମୟିକ ଦୁର୍ଗା ପୂଜା ତଥା ସୀତା ଦେବୀଙ୍କ ସୁବର୍ଣ୍ଣ ପ୍ରତିମା ଯୋଗେ ଯଜ୍ଞାନୁଷ୍ଠାନ ଇତ୍ୟାଦି ଆଜକୁ ପ୍ରାୟ ୮ ଲକ୍ଷ ୭୦ ହଜାର ବର୍ଷ ପୂର୍ବର ଘଟଣା ।

ଜନ୍ମେଜୟଙ୍କ ରାଜତ୍ୱର ଶେଷାଂଶରୁ କଳିଯୁଗର ଆରମ୍ଭ । ଅର୍ଥାତ୍ ୫୦୭୮ ବର୍ଷ କଳି ଯୁଗରୁ ଅତିବାହିତ ହେଲଣି । ପ୍ରାୟ ୭ ହଜାର ବର୍ଷ ପୂର୍ବେ ପାଣ୍ଡବମାନେ ସେମାନ-ଙ୍କର ନର୍ବାସନ ସମୟରେ, ଛଦ୍ମବେଶରେ ସମଗ୍ର ଭାରତ ବର୍ଷ ଭ୍ରମଣ କରିଥିଲେ । ଏହି ସମୟରେ ସେମାନେ ଭାରତର ବିଭିନ୍ନ ସ୍ଥାନରେ ଶିବ, ଶକ୍ତି, ଗଣେଶ ଓ ଅନ୍ୟାନ୍ୟ ବହୁ ଦେବା-ଦେବୀ

ମୂର୍ତ୍ତିମାନ ସ୍ଥାପନ କରି, ଏମାନଙ୍କର ପୂଜାରାଧନା ବଳରେ ଆସନ୍ନ ଆପଦରୁ ଆତ୍ମରକ୍ଷା କରୁଥିଲେ । ବର୍ତ୍ତମାନ ସୁଦ୍ଧା ଦେଶର ବିଭିନ୍ନ ସ୍ଥାନରେ ରାମଚନ୍ଦ୍ର ଓ ପାଣ୍ଡବଙ୍କ କର୍ତ୍ତୃକ ସ୍ଥାପିତ ବିଗ୍ରହ ମାନ, ସୁଦୂର ଅତୀତର ସ୍ମୃତି ବହନ କରି ବିରାଜିତ ଅଛନ୍ତି ।

ମୁଖ୍ୟତଃ ମହାଭାରତ ଯୁଗରୁ ସନାତନ ଧର୍ମ ସମାଜରେ ଦେବାଦେବୀ ବିଗ୍ରହ ପୂଜା ପ୍ରଚାର ଲାଭ କରିଥିବାର ପ୍ରମାଣ ମିଳେ । ବିଶେଷ କରି ପାଣ୍ଡବମାନଙ୍କର ଏକନିଷ୍ଠ ଧର୍ମଭାବ, ତ୍ୟାଗ, ସହିଷ୍ଣୁତା; ସାମ୍ୟ ଦର୍ଶନ ଏବଂ ଦୟା, ଦାକ୍ଷିଣ୍ୟାଦି ମହାନ୍ ସଦ୍‌ଗୁଣାବଳୀର ଆଦର୍ଶବାଦିତାରେ ଭାରତୀୟମାନେ ପାରମ୍ପରିକଭାବେ ଅନୁପ୍ରାଣିତ ହୋଇ ଆସିଛନ୍ତି ।

ଆର୍ଯ୍ୟଯୁଗୀୟ ରାଜତନ୍ତ୍ରର ପ୍ରାକ୍‌କାଳରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତୀୟମାନେ ରାଜାନୁଗତ ଧର୍ମ ବା ରାଜଧର୍ମକୁ ଜାତୀୟ ଧର୍ମ ରୂପେ ପବିତ୍ରତାର ସହିତ ପାଳନ କରି ଆସୁଥିଲେ । ପ୍ରାଚୀନ ରାଜା ମହାରାଜାମାନେ ରାଜ୍ୟ ଶାସନ, ପ୍ରଜା ପାଳନ ଓ ରାଜ୍ୟର ଶାନ୍ତି ତଥା ନିରାପତ୍ତା ରକ୍ଷା ପାଇଁ ଆପଣାର ଯୋଗ୍ୟତା ସ୍ୱୀୟ ଇଷ୍ଟ ଦେବାଦେବୀଙ୍କ ଠାରୁ ଲାଭ କରୁଥିବାର ଦୃଢ଼ ବିଶ୍ୱାସ ପୋଷଣ କରୁଥିଲେ । ସର୍ବୋପରି ସ୍ୱୟଂ ବିଷ୍ଣୁ ଜୀବ ଜଗତର ସମ୍ରାଟ ଓ ରାଜା । ତାହାଙ୍କର ଭୃତ୍ୟରୂପୀ ପ୍ରତିନିଧି, ଆର୍ଯ୍ୟଭୂମିର ସନାତନ ଧର୍ମର ଏହି ରୂପ ଦୃଢ଼ ପ୍ରତ୍ୟୟ ଥିଲା । କେବଳ ବିଶ୍ୱାସ ହିଁ ସନାତନ ହିନ୍ଦୁ ଧର୍ମର ସ୍ଥିତି ଓ ସତ୍ତା । ଏଣୁ ବିଶ୍ୱାସ-ଧର୍ମୀ ରାଜା, ମହାରାଜାମାନେ ଗଡ଼େଶ୍ୱର ବା ଗଡ଼େଶ୍ୱରୀଙ୍କର ପୂଜାର୍ଚ୍ଚନାଦି ବୈଦିକ ନିୟମରେ କରାଉଥିଲେ ଏବଂ ପର୍ବାଦି ଉତ୍ସବମାନ ସାମାଜିକ ଉତ୍ସବ ରୂପେ ସାଡ଼ମ୍ବରେ ପାଳନ କରୁ-

ଥିଲେ । ଫଳରେ ଏହି ସବୁ ରାଜଧର୍ମ ଦେଶର ସହର, ନଗର ଓ ପଲ୍ଲୀ ଅଞ୍ଚଳ ସର୍ବତ୍ର ଜାତୀୟ ଧର୍ମ ଭିତ୍ତିରେ ପାଳିତ ହେଉଥିଲା ।

ବର୍ତ୍ତମାନ ଜାତୀୟ ବିଜ୍ଞାନର ପ୍ରାଚୁର୍ଯ୍ୟ ଯୁଗରେ ମଧ୍ୟ ସନାତନ ଧର୍ମୀ ଭାରତୀୟ ପରିବାରମାନଙ୍କ ମଧ୍ୟରେ ସେମାନଙ୍କର ଉପାସ୍ୟ ବିଗ୍ରହ ସବୁ ପ୍ରସ୍ତର ବା ଇଷ୍ଟକ ମନ୍ଦିର ମଧ୍ୟରେ କିମ୍ବା କୁଟୀର, ତରୁତଳ ଅଥବା ଲତା କୁଞ୍ଜାଦି ମଧ୍ୟରେ ପ୍ରତିଷ୍ଠିତ ହୋଇ ପୂଜିତ ହୁଅନ୍ତି । ବିଶ୍ୱ ସଭ୍ୟତା କୋଳରେ ଭାରତ ମନ୍ଦିର ମାଳିନୀ ଦେଶ ରୂପେ ପ୍ରସିଦ୍ଧି ଲାଭ କରିବାର ଏହାହିଁ ଐତିହାସିକତା ।

## ଗ୍ରାମ ଇତିହାସ

ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ କୃଷ୍ଣଚନ୍ଦ୍ର ଷେଣ୍ଟି ନାମରେ ଜଣେ ଖ୍ୟାତନାମା ସୁଶାସକ ରାଜା କୁଜଙ୍ଗ ସିଂହାସନରେ ଆରୂଢ଼ ଥାଇ ଯଥାବିହିତ ରାଜ ଧର୍ମରେ ପ୍ରଜା ପାଳନ କରୁଥିଲେ । ରାଜ୍ୟର ବିଭିନ୍ନାଞ୍ଚଳ ପରିଦର୍ଶନ କରି ସେ ଆବଶ୍ୟକ ସ୍ଥଳେ ପ୍ରଜାମାନଙ୍କର ସୁଖ ସୁବିଧାର ବ୍ୟବସ୍ଥା କରୁଥିଲେ । ଏହାଙ୍କ ସମୟରେ ଗଡ଼ାଧିଷ୍ଠାତା ଶ୍ରୀ କୁଞ୍ଜବିହାରୀ ଦେବଙ୍କର ପ୍ରସ୍ତର ମନ୍ଦିର ନିର୍ମିତ ହୋଇଥିଲା ।

ଏକଦା ରାଜା ସଦଳବଳେ ରାଜ୍ୟର ପଶ୍ଚିମ ଦିଗସ୍ଥ ତିରଣ ଅଞ୍ଚଳ ପରିଦର୍ଶନରେ ବିଜେ ହୋଇଥିଲେ । ଅଧୁନା ଯେଉଁଠି କୃଷ୍ଣଚନ୍ଦ୍ରପୁର ଗ୍ରାମଟିର ଅବସ୍ଥିତି ଅଛି, ସେ ସ୍ଥାନଟି ସେତେ-

ବେଳେ ଏକ ନାଗ୍ଡଗଣ୍ଡାର ପାଣି ପ୍ରାନ୍ତ ବେଷ୍ଟିତ କୁଦ ବା ଆଞ୍ଚଳିକ ଭାଷାରେ 'ବେଳଁଗା' ସ୍ଥଳଭାଗ ଥିଲା । ପାନ୍ତର ମଧ୍ୟ ସ୍ଥିତ ଉଚ୍ଚ ସ୍ଥଳଭାଗଟି ପୂର୍ବ ପଟକୁ ଢାଲୁ ଭାବେ ଅବସ୍ଥିତ ଥିଲା । ଏଥିରେ ଦୁଇ ତିନ ଜଣ କନ୍ଧା ଚାଷୀ ବା ଅସ୍ଥାୟୀ ଚାଷୀ ପର୍ଣ୍ଣ କୁଟୀର ମଧ୍ୟରେ ବାସ କରୁଥିଲେ । ଏମାନେ ଧାନ ଚାଷ ଆରମ୍ଭ ଠାରୁ ଅମଳ କାର୍ଯ୍ୟ ଶେଷ ପର୍ଯ୍ୟନ୍ତ ଅସ୍ଥାୟୀ କୁଟୀରରେ ବାସ କରି ଉତ୍ପାଦିତ ଶସ୍ୟାଦି ନେଇ ସ୍ୱସ୍ଥାନକୁ ଚାଲି ଯାଉଥିଲେ । ଏ ସ୍ଥାନଟିର ପୂର୍ବାଞ୍ଚଳର ଅଧିକାଂଶ ସ୍ଥଳ ଭାଗ ପୂର୍ଣ୍ଣ ଜଙ୍ଗଲାକୀର୍ଣ୍ଣ ଥିଲା । ଏରସମା ଗ୍ରାମ, ଯାହା ବର୍ତ୍ତମାନ ଏ ଅଞ୍ଚଳର ପ୍ରଶାସନିକ ଓ ଆଞ୍ଚଳିକ ବାଣିଜ୍ୟର କେନ୍ଦ୍ରସ୍ଥଳ ରୂପେ ବିବେଚିତ, ସେତେବେଳେ ଏଠାରେ ମଧ୍ୟବିତ୍ତ ଶ୍ରେଣୀର ମୁଷ୍ଟିମେୟ ପରିବାର ବାସ କରୁଥିଲେ ।

ରାଜା ଏଠାକୁ ବିଜେ କଲାବେଳେ ଏଠାକାର ଆଉତା କର୍ମଚାରୀ ନାଲୁ ଭାଲୁଆ ସର୍ଦ୍ଦାର ସପରିବାରେ କେଉଁଠିକି ତୀର୍ଥ ଯାତ୍ରା କରିଥିଲେ ।

ବୈଶାଖର ମଧ୍ୟାହ୍ନ ସମୟ । ଅନୁଚରବର୍ଗଙ୍କ ସହ ରାଜା କ୍ଳାନ୍ତ ଓ କ୍ଷୁଧିତ ହୋଇ ପଡ଼ିଥିଲେ । ଅଉତା କର୍ମଚାରୀମାନେ ଅନୁପସ୍ଥିତ ଥିବାରୁ ସ୍ୱପରିକର ରାଜ ଗହଣର ପରିଚର୍ଯ୍ୟାର କୌଣସି ସମ୍ଭାବନା ନ ଥିଲା । ରାଜା ଅନନ୍ୟୋପାୟ ହୋଇ ତନ୍ତ୍ରଚ୍ୟ ନାଲୁଆ ଗଡ଼ର ଉତ୍ତର ଦିଗସ୍ଥ ମାତ୍ର ୨୦୦ ହସ୍ତ ଦୂରବର୍ତ୍ତୀ ଭିକାରୀ ପଣ୍ଡା ବ୍ରାହ୍ମଣ କୁଟୀରାଭିମୁଖେ ଗମନ କରିଥିଲେ ।

ଏଠାରେ ଏକମାତ୍ର ପଣ୍ଡା ବ୍ରାହ୍ମଣ ପରିବାର ବାସ କରୁଥିଲେ । ଏ ସ୍ଥାନଟି 'ଉଡ଼ିକଣା' ନାମରେ ଏ ଅଞ୍ଚଳରେ

ପଡ଼ିଥିଲା । ଏ ଯେଉଁ ସମୟର କଥା କୁହାଯାଉଛି ସେତେବେଳେ ଜଣେ ପ୍ରୌଢ଼ ବୟସର ପୁରୁଷ ବ୍ୟତୀତ ଏ ପରିବାରରେ ଅନ୍ୟ କେହି ବ୍ୟକ୍ତି ନ ଥିଲେ । ବିବାହର ଅଳ୍ପ ସମୟ ପରେ ଏହାଙ୍କର ସ୍ତ୍ରୀ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ପଣ୍ଡା ଠାକୁରଙ୍କର ଗୃହାଧିଷ୍ଠାତ୍ରୀ ଶ୍ରୀ ଦୁର୍ଗା ଠାକୁରାଣୀ ପଣ୍ଡାଙ୍କ ବାସଚାଳା ବାହାରେ ଏକ ସ୍ୱତନ୍ତ୍ର କୁଟୀରରେ ପ୍ରତିଷ୍ଠିତ ଥିଲେ । ଏହି ଦେବୀ କମନୀୟ ମଣିବିଗ୍ରହ ଅଟନ୍ତି । ପଣ୍ଡାଙ୍କର ଘର ଡିହ ଛଡ଼ା ବିଶ୍ୱାଏ ହେଲେ କୃଷି ଭୂମି ନ ଥିଲା । ଭିକ୍ଷାଲବ୍ଧ ଦ୍ରବ୍ୟରେ ସେ ଠାକୁରାଣୀଙ୍କର ଦୈନିକ ସେବାପୂଜା ପୂର୍ବକ ନିଜର ଗ୍ରାସାଚ୍ଛାଦନର ବ୍ୟବସ୍ଥା କରୁଥିଲେ ।

ରାଜା କୃଷ୍ଣଚନ୍ଦ୍ର ଯେତେବେଳେ ପଣ୍ଡାଙ୍କ ବାସସ୍ଥଳୀରେ ପହଞ୍ଚିବା ବେଳେ ଗୃହକର୍ତ୍ତା ପଣ୍ଡା ଭିକ୍ଷାରୁ ଫେରି ନ ଥିଲେ । ସ୍ଥାନଟିର ପରିବେଶ ରାଜଗହଣଙ୍କୁ ପରମ ସନ୍ତୋଷ ପ୍ରଦାନ କରିଥିଲା । ସପରିକର ରାଜା ଘଞ୍ଚ ବୃକ୍ଷ ସମୂହର ଶୀତଳ ଛାୟା ତଳେ ଉପବେଶନ କରି ଆପାତତଃ ସ୍ୱସ୍ତି ଲାଭ କରିଥିଲେ ମଧ୍ୟ କ୍ଷୁଧା ତୃଷ୍ଣା ଦାଉରୁ ନିଷ୍କୃତି ପାଇ ପାରୁ ନ ଥିଲେ । ଏ ବାଟରେ ସ୍ଥାନୀୟ କୌଣସି ବ୍ୟକ୍ତି ଠାରୁ ସହାୟତା ପାଇବା ଉଦ୍ଦେଶ୍ୟରେ ମନର ଅନ୍ତରାଳରେ ସମସ୍ତଙ୍କର ବ୍ୟଗ୍ରତା ବଢ଼ି ଯାଇଥିଲା ।

ପଣ୍ଡାଙ୍କ ଦାଣ୍ଡଦ୍ୱାର ସମ୍ମୁଖରେ ଥିବା କ୍ଷୁଦ୍ର ଗାଡ଼ିଆଟି ଗ୍ରୀଷ୍ମର ପ୍ରଖର ତାପରେ ଶୁଷ୍କତା ପ୍ରାପ୍ତ ହୋଇଥିଲା । ଜଣେକ ରାଜ କର୍ମଚାରୀ କୌଣସି ଏକ ବ୍ୟକ୍ତିର ସାକ୍ଷାତ ଲାଭ ଆଶାରେ ଇତସ୍ତତଃ ପଦ ଚାରଣ କରୁଥିବା ବେଳେ ଦେଖିଲେ ସେହି ଶୁଷ୍କ ଗାଡ଼ିଆ ଗୁଠରେ ଏକାଦଶ-ଦ୍ୱାଦଶ ବର୍ଷୀୟା ବାଳିକାଟିଏ କୁଲେଇ

ସାହାଯ୍ୟରେ ଧୂଳି ଖେଳ ଖେଳୁଅଛି । କର୍ମଚାରୀ ବାଳିକାର ନିକଟବର୍ତ୍ତୀ ହେବାରୁ ସେ ସମ୍ଭ୍ରମରେ ଦଣ୍ଡାୟମାନ ହୋଇ ନିଃସଙ୍କୋଚରେ ଅଥଚ ଭଦ୍ର ଭାବରେ ତାହାଙ୍କର ପରିଚୟ ଜିଜ୍ଞାସା କଲା । ଆଗନ୍ତୁକ ଏକ ରାଜ କର୍ମଚାରୀ ବୋଲି ନିଜର ପରିଚୟ ଦେଇ ବାଳିକାକୁ ରାଜାଙ୍କ ନିକଟକୁ ଡାକି ନେଇଗଲେ ।

ବାଳିକା କୁଟଲେଇ ହସ୍ତରେ, ଧୂଳି ଧୂସରିତ ଦେହରେ, ନିର୍ଭୟ ଓ ନିଃସଙ୍କୋଚରେ, ନମ୍ର ଭାବରେ ଯାଇ ରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲା । ରାଜା କିଛି ସମୟ ପାଇଁ ସ୍ତମ୍ଭିତ ହୋଇ, ବାଳିକାଟିର ରୂପ ଲାବଣ୍ୟ ନିରୀକ୍ଷଣ କରିବାକୁ ଲାଗିଲେ । ବାଳିକା ଦେହର କାନ୍ତି ଶୁଦ୍ଧ ଓ ସୁବର୍ଣ୍ଣ ପରି ଉଜ୍ଜ୍ୱଳ ଥିଲା । ଆଜାନୁ ଲମ୍ବିତ ହସ୍ତ । ଶଙ୍ଖ ଓ ବିଭିନ୍ନ ରଙ୍ଗିନ୍ ଫୁଲ ମାଳରେ ପ୍ରସ୍ତୁତ କଙ୍କଣ, ବାଜୁ ଓ ଗଳାହାର ପ୍ରଭୃତି ଦ୍ରବ୍ୟ ଭୂଷଣରେ ସେ ଭୂଷିତା । ମୁଖ ମଣ୍ଡଳ ଦର ପ୍ରସ୍ଫୁଟିତ ପଦ୍ମ ପରି କମନୀୟ ଓ ସୁନ୍ଦର । ପଦ ଦ୍ୱୟରେ ରଞ୍ଜିତ ନୂପୁର । ପରିଧେୟ ଏକ ନାଲି ରଙ୍ଗର ଛିଟ ଶାଢ଼ୀ । ମସ୍ତକର ଘନ କୁଞ୍ଚିତ ବେଣୀ, ଫୁଲ ଗଭା ଦ୍ୱାରା ମଣ୍ଡିତ ହୋଇ ପୃଷ୍ଠ ଭାଗରେ ନିତମ୍ବ ପର୍ଯ୍ୟନ୍ତ ଲମ୍ବିଥାଏ ।

ବାଳିକାର ଅସାମାନ୍ୟ ସୌନ୍ଦର୍ଯ୍ୟ ଓ ରୂପ ଲାବଣ୍ୟ ସନ୍ଦର୍ଶନରେ ରାଜା, କେଜାଣି କି ଦିବ୍ୟ ଭାବରେ ମୁଗ୍ଧ ହୋଇ, ବାତ୍ସଲ୍ୟ ବ୍ୟଞ୍ଜକ କୋମଳ ସ୍ୱରରେ ତାହାର ପରିଚୟ ପଚାରିଲେ । ବାଳିକା ପଣ୍ଡାଙ୍କର ଏକମାତ୍ର ମାତୃହୀନା କନ୍ୟା

ବୋଲି ନିଜର ପରିଚୟ ଦେଲି ଏବଂ ମୃଦୁ ମଧୁର ସ୍ୱରରେ, ନିବେଦନ ସୂଚକ ଭାଷାରେ କହିଲି, "ମହାରାଜ ଆପଣ ପରିକର ବର୍ଗଙ୍କ ସହ କ୍ଳାନ୍ତ ଓ କ୍ଷୁଧିତ ହୋଇ ପଡ଼ିଥିବା ପରି ଅନୁମିତ ହୁଏ । ମୋର ପିତା ଦୈନିକ ଭିକ୍ଷା ଲବ୍ଧ ଦ୍ରବ୍ୟରେ ଏହି କୁଟୀରର ଅଧିଷ୍ଠାତ୍ରୀ ଦେବୀଙ୍କର ଭୋଗାରାଧନା କରନ୍ତି ଓ ସେହି ପ୍ରସାଦାନ୍ନରେ ଆମ୍ଭେମାନେ ପ୍ରତିପୋଷିତ ହେଉ । ଆଜି ସକାଳେ ପିତା ଭିକ୍ଷାକୁ ଯିବା ପୂର୍ବରୁ, କିଛି ବାଲ୍ୟ ଭୋଗ ଠାକୁରାଣୀଙ୍କ ଲାଗି କରି ଘରେ ରଖିଦେଇ ଯାଇଛନ୍ତି । ଅକସ୍ମାତ କେହି ଅତିଥି ଅଭ୍ୟାଗତ ଆମ୍ଭ ଗୃହକୁ ବା ଠାକୁରାଣୀଙ୍କ ଦର୍ଶନକୁ ଆସିଲେ; ସେହି ବାଲ୍ୟ ଭୋଗରେହିଁ ଚର୍ଚ୍ଚା କରାଯାଇଥାଏ । ଆପଣ କୃପା କରି ଆଜି ଆମ୍ଭ କୁଟୀରରେ ପଦାର୍ପଣ କରିଛନ୍ତି । ମୁଁ ପ୍ରସାଦ ଆଣୁଛି, ଆପଣମାନେ କିଛି ମନେ ନକରି, ଦୟା ପୂର୍ବକ ଗ୍ରହଣ କରିବେ ।"

ରାଜାଙ୍କ ସ୍ୱୀକୃତିକୁ ଅପେକ୍ଷା ନକରି, ବାଳିକା ଦ୍ରୁତ ଗତିରେ ପଣ୍ଡାଙ୍କ ବାସ ଗୃହ ମଧ୍ୟକୁ ଛୁଟିଯାଇ, କେତେଖଣ୍ଡ ତାଳ-ପତ୍ର ଆସନ, କଦଳୀ ପତ୍ର ଓ ଜଳ ପାତ୍ର ଆଣି ଦେବୀ ମନ୍ଦିର ସମ୍ମୁଖରେ ରାଜ ଅତିଥି ବର୍ଗଙ୍କର ପ୍ରସାଦ ସେବା ନିମିତ୍ତ, ସ୍ଥାନ ସଜ୍ଜା କରିଦେଲା । ତତ୍ପରେ ସମସ୍ତଙ୍କୁ ହସ୍ତ ମୁଖାଦି ପ୍ରକ୍ଷାଳନ କରିବାକୁ ନିବେଦନ ଜଣାଇଲା । ରାଜାଙ୍କର ଅଙ୍ଗ ସେବକ ଭୃତ୍ୟ ରାଜ ବ୍ୟବହାର୍ଯ୍ୟ ରୌପ୍ୟ ପାତ୍ରରେ ଜଳ ନେଇ, ରାଜାଙ୍କ ହସ୍ତକୁ ବଢ଼ାଇ ଦେଲା ଓ ମୁଖ୍ୟ ରାଜ କର୍ମଚାରୀଙ୍କ ଇଙ୍ଗିତରେ ଅନ୍ୟମାନେ ପ୍ରସାଦ ସେବା ନିମିତ୍ତ ପ୍ରସ୍ତୁତ ହେବାକୁ ଲାଗିଲେ ।

ଇତ୍ୟବସରରେ ବାଳକା ଏକ ଉଜ୍ଜ୍ୱଳ ପିତ୍ତଳ ଥାଳରେ, ବିବିଧ ପ୍ରସାଦ ଆଣି, ରାଜାଙ୍କ ପାଇଁ ଦେବୀ ମନ୍ଦିର ବାରଣ୍ଡାରେ ପୂର୍ବରୁ ସଜ୍ଜିତ ଏକ ସ୍ୱତନ୍ତ୍ର ଆସନ ପାର୍ଶ୍ୱରେ ରଖି, ରାଜାଙ୍କୁ ସେ ସ୍ଥାନରେ ଉପବେଶନ କରିବାକୁ ଅନୁରୋଧ ଜଣାଇଲା। ରାଜା ବାଳିକାର ରୂପ, ଗୁଣ, ଅକପଟ ବ୍ୟବହାର ଓ ଶୁଚି, ପବିତ୍ରତାରେ ଏପରି ମୁଗ୍ଧ ହୋଇ ପଡ଼ିଥିଲେ ଯେ, ଶିଶୁ, ମାତାର ଆଦେଶକୁ ପାଳନ କଲା ପରି ସେ ବାଳିକାର ଇଙ୍ଗିତକୁ ଅପେକ୍ଷା କରୁଥିଲେ ମାତ୍ର।

ତତ୍ପରେ ବାଳିକା ଜଣେ ବ୍ରାହ୍ମଣ ରାଜକର୍ମଚାରୀଙ୍କ ସହ, ଗୃହାଭ୍ୟନ୍ତରକୁ ଯାଇ, ବିଭିନ୍ନ ପାତ୍ରରେ ସଜ୍ଜିତ ଥିବା ବିଭିନ୍ନ ପ୍ରକାରର ଉପାଦେୟ ଓ ସୁସ୍ୱାଦୁ ପ୍ରସାଦ ଆଣି, କଦଳୀ ପତ୍ରରେ ଅଭ୍ୟାଗତ ବର୍ଗଙ୍କୁ ପରିବେଷଣ କରିଦେଲେ। ପ୍ରସାଦର ସାମଗ୍ରୀ ଥିଲା, ଚୂଡ଼ାଘଷା, ପାଚିଲା କଦଳୀ, ପକ୍ୱାମ୍ର, ଘୃତାକ୍ତ ଦଧି ଓ ଶର୍କରା ଇତ୍ୟାଦି।

ପରମ ସନ୍ତୋଷର ସହିତ ସମସ୍ତେ ଉଦର ଭରି ଭୋଜନରେ ପରିତୃପ୍ତ ହୋଇ, ହସ୍ତ ମୁଖାଦି ଶୋଧନ ପୂର୍ବକ ନିଜ ନିଜ ଆସନରେ ବିଶ୍ରାମ କରୁ କରୁ, ଭ୍ରମଣ ଜନିତ ଶ୍ରମ ହେତୁ; ତନ୍ଦ୍ରାଭିଭୂତ ହୋଇ ପଡ଼ିଲେ। ବାଳିକା ରାଜାଙ୍କର ମୁଖ ବାସ ନିମିତ୍ତ, ଦେବୀ ପ୍ରସାଦ ବିଲ୍ୱ ଜଳ ଓ ବିଡିଆ ତାମ୍ବୁଳ ରାଜାଙ୍କ ହସ୍ତକୁ ବଢ଼ାଇ ଦେଇ, ତାହାଙ୍କୁ ବିଶ୍ରାମ କରିବାକୁ ନିବେଦନ କଲା। ତାହାର ପିତା ଘରକୁ ଫେରିବା ପର୍ଯ୍ୟନ୍ତ, ସ୍ୱଳ୍ପ କାଳ ପାଇଁ ସେଠାରେ ଅପେକ୍ଷା କରିବାକୁ ଅନୁରୋଧ କରି,

ବାଳିକା ନିଜେ ଦେବୀ କୁଟୀରାଭ୍ୟନ୍ତରକୁ ଯାଇ ବାଉଁଶ କବାଟଟି ଆଉଯାଇ ଦେଲା ।

ରାଜା ବହୁକ୍ଷଣ ପର୍ଯ୍ୟନ୍ତ ସ୍ୱୀୟ ଆସନରେ ଉପବିଷ୍ଟ ରହି ମନ୍ଦିରାଭ୍ୟନ୍ତରରୁ ବାଳିକାର ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରିଥିଲେ । ମାତ୍ର ବାଳିକାଟି ମନ୍ଦିରରୁ ଫେରିଲା ନାହିଁ । ରାଜା ସ୍ୱପ୍ନାବିଷ୍ଟ ପରି ଏ ସମସ୍ତ ଘଟଣା ମନେ ମନେ ଚିନ୍ତାକରି ଅତିଶୟ ବିସ୍ମିତ ହେଲେ ।

ସମୟ ଅପରାହ୍ଣ ପ୍ରାୟ ଚାରି ଘଟିକା । ଇତି ମଧ୍ୟରେ ରାଜ ପରିକର ବର୍ଗ ମଧ୍ୟାହ୍ନ କାଳ ନ ବିଶ୍ରାମରୁ ଉତ୍‌ଥିତ ହୋଇ ରାଜଧାନୀ କୁଜଙ୍ଗ ଗଡ଼କୁ ପ୍ରତ୍ୟାବର୍ତ୍ତନ କରିବା ଅଭିପ୍ରାୟରେ ରାଜାଦେଶ ଅପେକ୍ଷା କରୁଥାନ୍ତି । ରାଜା କିନ୍ତୁ ବାଳିକା ଓ ତାହାର ପିତା ଏବଂ ସେମାନଙ୍କର ଉପାସ୍ୟ, ଦେବୀଙ୍କ ବିଷୟରେ ସବିଶେଷ ବିବରଣୀ ଜାଣିବା ପାଇଁ ଚିନ୍ତାମଗ୍ନ; ଅଥଚ ଗମ୍ଭୀର ଭାବରେ ଆସନୋ ପରି ଅର୍ଦ୍ଧ ପଦ୍ମାସନରେ ଉପବିଷ୍ଟ ଥାଆନ୍ତି । କାରଣ, ଇତାଦୃଶ ପର୍ଣ୍ଣକୁଟୀର ବାସୀ ଜଣେ ଭିକ୍ଷାଜୀବୀ, ଦରିଦ୍ର ବ୍ରାହ୍ମଣ କନ୍ୟା କର୍ତ୍ତୃକ ଏଭଳି ଅସମୟରେ ଗଣ ସହ ରାଜା ଏ ଯେଉଁଭଳି ସୌଜନ୍ୟ ପୂର୍ଣ୍ଣ ଭାବରେ ସମ୍ମାନର ସହ ପରିଚର୍ଚ୍ଚିତ ହେଲେ, ଏଥିରେ କୌଣସି ଅଦୃଶ୍ୟ ଶକ୍ତି ନିହିତ ଥିଲା ବୋଲି ରାଜା ଉପଲବ୍ଧି କରୁଥିଲେ । ପୁନଶ୍ଚ ବାଳିକାଟି ବିଶ୍ରାମ ନେବା ପାଇଁ ରାଜାଙ୍କୁ ଅନୁରୋଧ ଜଣାଇ, ମନ୍ଦିରାଭ୍ୟନ୍ତରକୁ ଯାଇ ଏ ପର୍ଯ୍ୟନ୍ତ ନ ଫେରିବାରୁ, ରାଜାଙ୍କ ମନ ମଧ୍ୟରେ କୌତୁହଳ ମିଶା ସନ୍ଦେହ ବହୁ ଗୁଣରେ ବୃଦ୍ଧି ପାଇବା ସ୍ୱାଭାବିକ ।

ସହସା ପୂର୍ବୋକ୍ତ ବ୍ରାହ୍ମଣର କୁଟୀର ଝାଞ୍ଜା ମଧ୍ୟରୁ ଜଣେ ପ୍ରୌଢ଼ ବୟସର ବ୍ରାହ୍ମଣ ଦ୍ରୁତ ଗତିରେ ଆସି, ରାଜାଙ୍କ

ସମ୍ମୁଖରେ ସଙ୍କୁଚିତ ଅଥଚ ଜିଜ୍ଞାସୁ ଦୃଷ୍ଟିରେ ନମ୍ର ଭାବରେ ଦଣ୍ଡାୟମାନ ହେଲେ । ପ୍ରୌଢ଼ ବ୍ୟକ୍ତିଙ୍କର ଶରୀର ବର୍ଣ୍ଣ କୃଷ୍ଣ, ମାତ୍ର ଦୀର୍ଘ ସୁଗଠିତ ଅବୟବ । ପରିଧେୟ ଡଭ୍ ସାମସ୍ତିକ ଖଣ୍ଡିଏ ଛନ୍ନ ବୁଣା ପାଞ୍ଚ ହାତ ପରିଷ୍କୃତ ଖଦି । କାନ୍ଧରେ ପାଚିଲା ଗାମୁଛା । ସ୍କନ୍ଧ ଦେଶରେ ଶୁଭ୍ର ଉପବୀତ ଓ କପାଳରେ ଚନ୍ଦନର ନିର୍ଦ୍ଦଳ ପ୍ରଲେପ ବ୍ରାହ୍ମଣଙ୍କର ଚିକ୍କଣ କଳା ସୌମ୍ୟ ଦେହବାର ଶ୍ରୀ ବୃଦ୍ଧି କରୁଥାଏ ।

ଯାହାଙ୍କ ଅପେକ୍ଷାରେ ରଜା ଏତେ ସମୟ ଧରି ନିଜର କର୍ମରତ ବହୁ ମୂଲ୍ୟ ସମୟ ଅତିବାହିତ କଲେଣି, ଏ କଣ ସେହି ବ୍ୟକ୍ତି ? ଏହା ଭାବି, କାଳ ବିଳମ୍ବ ନକରି ହିନ୍ଦୁ ରାଜ ଧର୍ମର ସଂସ୍କୃତି ଅନୁଯାୟୀ, ରଜା ବ୍ରାହ୍ମଣଙ୍କୁ ନମସ୍କାର ଜଣାଇ, ଆବେଗ ପୂର୍ଣ୍ଣ ଭାଷାରେ, "ଆପଣ କ'ଣ ଏ ଗୃହର କର୍ତ୍ତା ଓ ଏହି ଠାକୁରାଣୀଙ୍କର ପୂଜକ ? ଆପଣଙ୍କର ନାମ କ'ଣ, ଦୟାକରି ଜଣାଇବେ କି;" ଇତ୍ୟାଦି ପ୍ରଶ୍ନ ପରେ ପ୍ରଶ୍ନ ପଚାରି, ଉତ୍ତର ଅପେକ୍ଷାରେ ବ୍ରାହ୍ମଣଙ୍କ ମୁଖକୁ ଚାହିଁ ରହିଲେ ।

ପ୍ରୌଢ଼ ବ୍ୟକ୍ତି ସୁଶିକ୍ଷିତ ନହେଲେ ମଧ୍ୟ, ଅଶିକ୍ଷିତ ନଥିଲେ । ଭାରତ ବର୍ଷରେ ବିଶେଷ କରି ହିନ୍ଦୁ ଧର୍ମ ମଧ୍ୟରେ ଯଦି କୌଣସି ବୈଶିଷ୍ଟ୍ୟ ପ୍ରାଚୀନ କାଳରେ ଥିଲା; ତାହା ହେଉଛି ଏହି ବ୍ରାହ୍ମଣ ଜାତିର ଆଚାର ବ୍ୟବହାର । ପ୍ରାଣ ହୀନ ବହିରଙ୍ଗ ଶିକ୍ଷା ପ୍ରାପ୍ତ କୌଣସି ବ୍ୟକ୍ତି ମୋର ଉପର୍ଯ୍ୟୁକ୍ତ ଉକ୍ତିର ସାରମର୍ମ ନବୁଝି; ବିରୁଦ୍ଧ ଯୁକ୍ତି ଦର୍ଶାଇ, ଏହାକୁ ଅବାସ୍ତବ ମତ ବୋଲି ପ୍ରତିପାଦନ କରିବାକୁ ଚାହିଁଲେ; ମୁଁ ତାହା ଗ୍ରହଣ କରି ନେବିନାହିଁ କିମ୍ବା ମୋ ମତକୁ ଜୋର ଜବରଦସ୍ତି କରି କାହା ମୁଣ୍ଡ ଉପରେ

ଗୁପ୍ତ ରଖିବା ମୋର ଆଦୌ ଅଭିପ୍ରାୟ ନୁହେଁ । ବରଂ ଜୋର ଜବରଦସ୍ତି ମାତ୍ରର ମୁଁ ଚିର ବିରୋଧୀ । ଫଳତଃ ମୋର ଉଲ୍ଲିଖିତ ମନ୍ତବ୍ୟର ଯଥାର୍ଥତା ସ୍ୱରୂପ ମୁଁ ଏତିକି ମାତ୍ର କହି ରଖିବାକୁ ଚାହେଁ ଯେ, ସନାତନ ସମାଜର ସ୍ରଷ୍ଟା ବ୍ରାହ୍ମଣମାନେ ରାଜନୀତି, ବିଜ୍ଞାନ, ଆଧ୍ୟାତ୍ମ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ସଙ୍ଗୀତ କଳା, ଶିକ୍ଷା, ସଭ୍ୟତା ତଥା ବିଶ୍ୱ ମାନବୀୟ ସଂସ୍କୃତି ପ୍ରଭୃତି ବିଷୟ ସମ୍ବଳିତ ଯେଉଁ ସବୁ ଚିର ଜୀବନ୍ତ ଶାସ୍ତ୍ର ପ୍ରଣୟନ କରି; ସମଗ୍ର ଭୂଲୋକର ମାନବ ଜାତିକୁ ସୁସଂହତ, ସୁନିୟନ୍ତ୍ରିତ ଓ ସୁଶିକ୍ଷିତ କରି ପାରିଥିଲେ; ଆଧୁନିକ ବିଶ୍ୱ ଧ୍ୱଂସକାରୀ, ଜଡ଼ ବିଜ୍ଞାନର ଗବେଷକ ଓ ଉଦ୍ଭାବକମାନେ ସେହି ସନାତନୀ ବ୍ରାହ୍ମଣ ରଚନାର ଏକ ଏକ ନିର୍ଜୀବ ନକଲ ଛାୟା ପ୍ରତିକୃତି ଉଠାଇ, ଫୁଲେଇ ବେଙ୍ଗ ପରି ଗର୍ବ ଅନୁଭବ କରୁଛନ୍ତି ମାତ୍ର ।

ରାଜାଙ୍କ ପ୍ରଶ୍ନର ଉତ୍ତରରେ ପ୍ରୌଢ଼ କହିଲେ, "ମଣିମା ! ମୁଁ ଏ ପରିବାରର ଏକମାତ୍ର ବ୍ୟକ୍ତି । ମୋର ଉପାସ୍ୟ ଏହି ଦୁର୍ଗା ଦେବୀଙ୍କର ସେବା-ପୂଜା ଭିକ୍ଷା ବୃତ୍ତି ଦ୍ୱାରାହିଁ ସମ୍ପାଦିତ ହୋଇଥାଏ । ତୁମ୍ଭେ ଅପ୍ରତ୍ୟାଶିତ ଭାବେ, ଏ ଅସମୟରେ କିପରି ଏ ଦରିଦ୍ର କୁଟୀରରେ ପଦାର୍ପଣ କରି ଏଭଳି ଅବ୍ୟବସ୍ଥିତ ଭାବେ ଅବସ୍ଥାନ କରୁଛନ୍ତି, ମୁଁ ତାହା ଭାବି ଯେତିକି ବିସ୍ମିତ ହେଉଛି, ତତୋଧିକ ମର୍ମାହତ ହେଉଛି ମଧ୍ୟ ।"

ବ୍ରାହ୍ମଣଙ୍କ ଆନ୍ତରିକତା ପୂର୍ଣ୍ଣ ସରଳ କଥା ଶୁଣି ରାଜା କହିଲେ, "ସେପରି କିଛି ଅସୁବିଧା ହୋଇନାହିଁ ପଣ୍ଡା ଠାକୁରେ । ଆପଣଙ୍କ ଦ୍ୱାଦଶ ବର୍ଷିଆ ଭୁଆସୁଣୀ କନ୍ୟାଟି, ତାହାର ବ୍ୟବହାର ଓ ଜଳ ଯୋଗାଡ଼ର ସୁବ୍ୟବସ୍ଥା ଦ୍ୱାରା ଆମ୍ଭମାନଙ୍କୁ ଆପ୍ୟାୟିତ

କରିବା ସଙ୍ଗେ ସଙ୍ଗେ, ତା ଠାରେ ଉନ୍ନତି କରି ଦେଉଛି । ଝିଅଟି ଠାକୁରାଣୀଙ୍କର କୁଟୀର ମଧ୍ୟକୁ ଯାଇ ଆଉ ଫେରି ନାହିଁ । ବୋଧହୁଏ ଆମ୍ଭମାନଙ୍କର ପରିଚର୍ଯ୍ୟା ଜନିତ ଶ୍ରମ ଓ ପ୍ରଖର ଉତ୍ତାପରେ କ୍ଲାନ୍ତ ହୋଇ, ଗୃହ ମଧ୍ୟରେ ନିଦ୍ରିତା ହୋଇ ପଡ଼ିଛି । ଦୟାକରି ତାହାକୁ ଟିକିଏ ଡାକିଦେଲେ, ଭଲ ଭାବରେ ତାକୁ ଥରେ ଦେଖି, ରାଜଧାନୀକୁ ଫେରି ଯାଆନ୍ତି ।"

ରାଜାଙ୍କର କଥା ଗୁଡ଼ିକୁ ପଣ୍ଡା ଠାକୁରେ ପୁତ୍ତଳିକା ପରି ନିଷ୍ଚଳ ଭାବେ ଦଣ୍ଡାୟମାନ ରହି ଶୁଣୁଥିଲେ । ରାଜାଙ୍କ ମୁଖରୁ ତାଙ୍କର କନ୍ୟା କଥା ଶୁଣି, ସ୍ୱପ୍ନୋତ୍‌ଥିତ ବ୍ୟକ୍ତି ପରି, ବିସ୍ମୟାବିଷ୍ଟ ସ୍ୱରରେ କହିଲେ "ମହିମା ! ବିବାହର ଦୁଇବର୍ଷ ପରେ କୌଣସି ସନ୍ତାନ ହେବା ପୂର୍ବରୁ ମୋର ପତ୍ନୀର୍ ପରଲୋକ ହୋଇ ଯାଇଛି । ସୁତରାଂ କନ୍ୟାଟିଏ ବା ମୋର ଆସିବ କେଉଁଠୁ ?" ଏହା ଶୁଣି ରାଜା ପଣ୍ଡାଙ୍କୁ ତୁରନ୍ତ ମନ୍ଦିରର ଦ୍ୱାର ଉନ୍ମୁକ୍ତ କରିବାକୁ କହିଲେ । ପଣ୍ଡାଏ ଯଥା ଶୀଘ୍ରରେ ମନ୍ଦିରର ଦରଜା ଖୋଲି ଦେଖନ୍ତି, ଠାକୁରାଣୀଙ୍କ ବିଗ୍ରହ ବ୍ୟତୀତ କୌଣସି ବାଳିକା ସେଠାରେ ନାହିଁ ।

ଏତାଦୃଶ ବିସ୍ମୟକର ବ୍ୟାପାରରେ ରାଜାଙ୍କ ସମେତ ତାହାଙ୍କ କର୍ମଚାରୀ ବର୍ଗ ସ୍ତମ୍ଭୀଭୂତ ହୋଇ ପଣ୍ଡାଙ୍କୁ ଏହାର ରହସ୍ୟ କ'ଣ ବୋଲି ପଚାରିଲେ । ପଣ୍ଡାଏ କହିଲେ, "ଆଜ୍ଞା, ଏପରି ବହୁବାର ଘଟିଛି । ଅସୁସ୍ଥତା ବଶତଃ କିମ୍ବା ଭକ୍ତଙ୍କର ଝଡ଼-ବର୍ଷା ଯୋଗୁଁ ଭିକ୍ଷା ନିମିତ୍ତ, ବହିର୍ଦେଶକୁ ଯାଇ ପାରିବାର ସାମର୍ଥ୍ୟ ନଥିଲେ, ଅପ୍ରତ୍ୟାଶିତ ଭାବେ କୌଣସି ଅପରିଚିତ ବ୍ୟକ୍ତି ବିବିଧ ପ୍ରକାରର ସଞ୍ଚା ଆଣି ଏଠାରେ ଦେଇ ଯାଇ

ଥାଆନ୍ତି । ଏହା ସେହି ଦୟାମୟୀ ମା'ଙ୍କର କୃପା ଦୃଷ୍ଟି ବୋଲି ମୁଁ ମନେ କରିଥାଏ । ବୋଧହୁଏ ସପରିକର ରାଜ ଅତିଥି ବର୍ଗଙ୍କର ଆତିଥ୍ୟ ସତ୍କାର, ସେହି ମା' ଭୂଆସୁଣୀ କନ୍ୟା ରୂପରେ ହିଁ ସମାଧାନ କରି ଅଛନ୍ତି ।"

ସେବକ ପଣ୍ଡାଙ୍କର ପ୍ରାଣଭରା ସେବା ଉପାସନାରେ ଜୀବନ୍ତ ବିଗ୍ରହ ସେହି ଦୁର୍ଗା ଦେବୀଙ୍କର ଏତାଦୃଶ, ଅନୁପମ ମହିମା ସମ୍ପର୍କରେ କାହାରି ଦ୍ୱିଧା ବା ସନ୍ଦେହ ରହିଲା ନାହିଁ । ସମସ୍ତେ ମା'ଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ଦଣ୍ଡ ପ୍ରଣତି ଜଣାଇଲେ ।

ଇତ୍ୟବସରରେ ନାଲୁଆ ସର୍ଦ୍ଦାର ଉପସ୍ଥିତ ହୋଇ ସଶଙ୍କିତ ଭାବେ ମହାରାଜାଙ୍କୁ ଜୁହାର ହେଲେ । ରାଜା ପଣ୍ଡା ଠାକୁରଙ୍କୁ କହିଲେ, ଠାକୁରେ ! ଆଜିଠାରୁ ଠାକୁରାଣୀଙ୍କ ନାମ ଭୂଆସୁଣୀ ରଖାଗଲା । ମୁଁ ଠାକୁରାଣୀଙ୍କର ଦୈନିକ ସେବାର ଆନୁକୂଲ୍ୟ ପାଇଁ ବାର ମାଣ ଜମି ଆଜିଠାରୁ ଖଞ୍ଜା କଲି । ଠାକୁରାଣୀଙ୍କ ବିଜେସ୍ଥଳୀ ନିକଟବର୍ତ୍ତୀ ଅଞ୍ଚଳରୁ ଉପଯୁକ୍ତ ଉର୍ବର ଭୂମି ଦେଖି, ସର୍ଦ୍ଦାର ଆପଣଙ୍କୁ ଚିହ୍ନଟ କରାଇ ଦଖଲକାର କରାଇ ଦେବେ । ଏହା ବ୍ୟତୀତ ବର୍ଷର ପ୍ରଧାନ ପ୍ରଧାନ ପର୍ବ ଓ ଶାରଦୀୟ ପୂଜାର ସମସ୍ତ ଖର୍ଚ୍ଚ ରାଜକୋଷରୁହିଁ ବ୍ୟୟିତ ହେବ ।

ବର୍ତ୍ତମାନ ଭୂଆସୁଣୀ ଠାକୁରାଣୀଙ୍କର ବିଜେସ୍ଥଳୀର ପ୍ରାୟ ୨୦୦ ହାତ ଦକ୍ଷିଣକୁ "ନାଲୁଆ ଡିହ" ନାମକ ପ୍ରାୟ ଦୁଇ ଏକର ପରିମିତ ଏକ ଉଚ୍ଚ ଡିହ ଜମି ଅଛି । ଏହାର ଚତୁଃପାର୍ଶ୍ୱରେ ବିଖ୍ୟାତ "ଦେବୀ ଦଣ୍ଡା" ବେଢ଼ି ରହିଛି । କଥିତ ଅଛି, ଏହି ସ୍ଥାନଟି ହିଁ ନାଲୁ ଭାଲୁଆ ସର୍ଦ୍ଦାରଙ୍କ ଗଡ଼ ଥିଲା । ଗଡ଼ର ଗୃହ

ଓ ପ୍ରାଚୀର ଇଷ୍ଟକ ନିର୍ମିତ ଥିଲା । କେତେ କେତେ କହନ୍ତି, କୁଜଙ୍ଗର ରାଜବଂଶର ଲୋପ ପରେ, ଏହି ଗଡର ଜମି କାଳକ୍ରମେ କୌଣସି ସୂତ୍ରରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବା ନିମିତ୍ତ ହସ୍ତାନ୍ତରିତ ହୋଇଥିଲା ।

କିନ୍ତୁ ଅନୁସନ୍ଧାନରୁ ନାଲୁଆ ଉକ୍ତ ଭୂମି ଶ୍ରୀ ଜଗନ୍ନାଥ ସେବା ଉଦ୍ଦେଶ୍ୟରେ କୁଜଙ୍ଗର ରାଜା ଦାନ କରିଥିବାର ଏହି ପ୍ରକାର ପ୍ରମାଣ ମିଳେ । ରାଜା କୃଷ୍ଣଚନ୍ଦ୍ର ସେଣ୍ଢିଙ୍କ ଦରବାରର ଅନତି ଦୂରରେ ସମାଗତ ଲୋକେ ଦିନ ଧରି ଜଣେ ଅପରିଚିତ ବପୁବନ୍ତ ବ୍ୟକ୍ତି ନୀରବରେ ଦଣ୍ଡାୟମାନ ହୋଇ ରହୁଥିବାର, ରାଜା ଲକ୍ଷ୍ୟ କରୁଥିଲେ । ଦିନେ ସେ ତାହାଙ୍କୁ ପାଖକୁ ଡାକି କାରଣ ପଚାରିବାରୁ ଅପରିଚିତ ବ୍ୟକ୍ତି କହିଲେ, "ମୁଁ ଗଜପତି ମହାରାଜାଙ୍କ ଦେଓ୍ୱାନ୍ ଥିଲି । ସାମାନ୍ୟ ଏକ ତ୍ରୁଟି ଯୋଗୁଁ ମୁଁ କାର୍ଯ୍ୟରୁ ବହିଷ୍କୃତ ହୋଇଛି । ମହିମା ! ଆପଣତ ଠାକୁର ରାଜାଙ୍କର ଜଣେ ପ୍ରିୟ ସାମନ୍ତ ରାଜା ଅଟନ୍ତି । ବର୍ତ୍ତମାନ ମୁଁ ଶ୍ରୀ ଜଗନ୍ନାଥଙ୍କର ଚୁମର ସେବା କରିବାକୁ ଚାହେଁ । ଅତିବଡ଼ି ସମ୍ପ୍ରଦାୟର ମୁଁ ଏକ କରଣ ବୈଷ୍ଣବ ପରିବାରର ଲୋକ । ଦୟା ପୂର୍ବକ ଏହି ସେବାର ସୁଯୋଗ ଏ ଅଧମକୁ କରାଇ ଦେବାର ସୁବ୍ୟବସ୍ଥା କରନ୍ତୁ ।"

ଏହି ଭଦ୍ର ବ୍ୟକ୍ତିଙ୍କର ଅନୁରୋଧରେ **ଭକ୍ତିପରାୟଣ** ରାଜା କୃଷ୍ଣଚନ୍ଦ୍ର ଠାକୁର ରାଜାଙ୍କ ନିକଟକୁ ଏକ **ପତ୍ର** ପ୍ରେରଣ କରି ଏହି କର୍ମଚ୍ୟୁତ ବ୍ୟକ୍ତିଙ୍କୁ ଶ୍ରୀ ଜଗନ୍ନାଥଙ୍କର ସ୍ନାନ ଓ ରଥଯାତ୍ରା-କାଳୀନ ଚୁମର ସେବା ଦାନ କରିବାକୁ ଅନୁରୋଧ ଜଣାଇଥିଲେ । ଗଜପତି ମହାରାଜା କୁଜଙ୍ଗ ସାମନ୍ତ ରାଜାଙ୍କର ଅନୁରୋଧ ରକ୍ଷା

କରି ଏହି ବୈଷ୍ଣବଙ୍କୁ ଶ୍ରୀ ଜଗନ୍ନାଥଙ୍କ ଗୃହମର ସେବା ଅର୍ପଣ କରିଥିଲେ । ଏହାଙ୍କର ନାମ ଶ୍ରୀ ବୈକୁଣ୍ଠ ଦାସ ଥିଲା । ଏହି ଗୃହମର ସେବା ପାଇଁ କୁଜଙ୍ଗ ରାଜା ନାଲୁଆ ଡିହ ସମେତ ୪୫ ଏକର ନିଷ୍କର ଭୂମି ବୈକୁଣ୍ଠ ଦାସଙ୍କୁ ଅର୍ପଣ କରିଥିଲେ । ସେହି ସମୟରୁ ବୈକୁଣ୍ଠ ଦାସଙ୍କ ପରିବାର ପରମ୍ପରାକ୍ରମେ ଭୁଆସୁଣୀ ଠାକୁରାଣୀଙ୍କ ପୀଠ ସ୍ଥଳୀ ସଂଲଗ୍ନ ପଶ୍ଚିମ ଦିଗସ୍ଥ "ଯଁ । ବେଡ଼ୁଆଁ ଗ୍ରାମ"ରେ ବାସ କରୁଅଛନ୍ତି ।

ବର୍ତ୍ତମାନ ଏହି ନାଲୁଆ ଡିହ ଶ୍ରୀ ଜଗନ୍ନାଥଙ୍କର ଅମୃତ ମଣୋହି ସ୍ୱତ୍ୱ ହୋଇ ରହିଛି ଏବଂ ଏହି ଗ୍ରାମର ଜନୈକ ସ୍ୱାଇଁ ପରିବାର ଉକ୍ତ ସ୍ୱତ୍ୱକୁ ଦାସ ପରିବାର ଠାରୁ କ୍ରୟ କରିଅଛନ୍ତି । ଅଳ୍ପ କେତେଦିନ ପୂର୍ବେ ନାଲୁଆ ଡିହର କୃଷକ ଏକ ପୁଷ୍କରିଣୀ ଖନନ କରିବା ସମୟରେ ମୃତ୍ତିକା ତଳୁ କେତେକ ଇଟା, ପଥର ଓ ଭଗ୍ନ ମୂର୍ତ୍ତି ମିଳିଥିଲା । ଏଣୁ ସର୍ଦ୍ଦାରଙ୍କ ପ୍ରାଚୀନ ଦୁର୍ଗଟି ଇଟା ବା ପ୍ରସ୍ତର ନିର୍ମିତ ଥିବାର ସ୍ପଷ୍ଟ ଅନୁମିତ ହୁଏ । ଗଡ଼ର ମୁଖ୍ୟ ଦ୍ୱାରରେ କଂସା ନିର୍ମିତ କବାଟ ସଂଲଗ୍ନ ଥିଲା । କିମ୍ବଦନ୍ତୀ ଅଛି ଯେ, ଏହି କବାଟର ପତନ ଶବ୍ଦ କୁଜଙ୍ଗ ରାଜପ୍ରାସାଦ ପର୍ଯ୍ୟନ୍ତ ଶୁଣା ଯାଉଥିଲା ।

କେଉଁ ଆବହମାନ ଯୁଗରୁ ସନାତନ ଧର୍ମୀ ମାନବ ଈଶ୍ୱର ଓ ବିଭିନ୍ନ ଦେବାଦେବୀମାନଙ୍କର ବିଗ୍ରହ ଉପାସନା କରି ଆସିଛି । ସେ ଏହି ବିଗ୍ରହ ପୂଜା ମାଧ୍ୟମରେ ବ୍ୟକ୍ତିଗତ ତଥା ସାମାଜିକ ଧର୍ମାଚରଣ ସନାତନ ଧର୍ମର ବୈଶିଷ୍ଟ୍ୟ ବୋଲି ସେ ଦେଖାଇ ଦେଇଛି ।

ଏହି ଦୁର୍ଗା ଠାକୁରାଣୀଙ୍କ ସମ୍ବନ୍ଧରେ ବହୁ କୌତୂହଳପ୍ରଦ କମ୍ବଦନ୍ତୀ ତଦାବଧି ଏହି ଅଞ୍ଚଳର ଅଧିକାଂଶ ପ୍ରବୀଣ ବ୍ୟକ୍ତିମାନଙ୍କ ମୁଖରୁ ଶୁଣାଯାଏ । ଏପରିକି ଏହିସବୁ କମ୍ବଦନ୍ତୀ ପାରମ୍ପରିକ ଭାବରେ ଏପର୍ଯ୍ୟନ୍ତ ଆଞ୍ଚଳିକ ପ୍ରଶସ୍ତି ଲାଭ କରିଛି । ସେହି ସବୁ ପ୍ରତ୍ୟେକ ବଡ଼ ଜନଶ୍ରୁତିଗୁଡ଼ିକର ପୂର୍ଣ୍ଣ ବିବରଣୀ ଉଲ୍ଲେଖ କରି ପୁସ୍ତକର ଅବୟବ ବୃଦ୍ଧି କରିବା ନିଷ୍ପ୍ରୟୋଜନ । ଏଠାରେ ଆଉ ଗୋଟିଏ ଦୁଇଟି ମାତ୍ର ଚମତ୍କାରପ୍ରଦ କମ୍ବଦନ୍ତୀର ଅବତାରଣା କରି "ଯଥା ଦେହି ତଥା ଦେବତା" ଏହି ଲୌକିକ ବାକ୍ୟର ସାର୍ଥକତା ଦର୍ଶାଉଅଛି ।

ସାଧାରଣତଃ ସମଗ୍ର ଓଡ଼ିଶାର କଟକ ଓ ପୁରୀ ଏହି ଦୁଇଟି ଜିଲ୍ଲାର ଅଧିବାସୀମାନେ ରଜ ପର୍ବଟିକୁ ଏକ ଆମୋଦପ୍ରମୋଦ ଉପଯୋଗୀ ପର୍ବ ରୂପେ ସାମୂହିକ ଭାବେ ପାଳନ କରି ଥାଆନ୍ତି । ବିଶେଷ କରି ସମାଜର ଝିଅ ବୋହୂମାନେ ଏହି ପର୍ବ ପାଳନର ମୁଖ୍ୟ ପୂଜାରିଣୀ ଅଟନ୍ତି । ନୂତନ ବସ୍ତ୍ର, ନୂତନ ଶଙ୍ଖା, ଚୂଡ଼ି ଓ ଅଳତା ସିନ୍ଦୂର ଇତ୍ୟାଦି ଭୂଷଣରେ ଭୂଷିତା ହୋଇ ଏମାନେ ରଜ ପର୍ବ ସମୟରେ ନିଃସଙ୍କୋଚରେ ବିଭିନ୍ନ ଦେବାଳୟ, ଗ୍ରାମ ଓ ଦର୍ଶନୀୟ ସ୍ଥାନମାନ ଭ୍ରମଣ କରି ଦାଣ୍ଡ ଦର୍ଶନ ଏବଂ ବନ୍ଧୁ ମିଳନ ପୂର୍ବକ ନାନା ଆମୋଦ ପ୍ରମୋଦରେ ପର୍ବ ଉଦ୍‌ଯାପନ କରନ୍ତି । ଏଣୁ ସ୍ୱଭାବତଃ ଫେରିବାଲା ବ୍ୟବସାୟୀମାନେ ଏହିସବୁ ନାରୀ ପ୍ରସାଧନ ସାମଗ୍ରୀ ପସରା ନେଇ ଗ୍ରାମେ ଗ୍ରାମେ ପର୍ବର ଅବ୍ୟବହିତ ପୂର୍ବରୁ ବିକ୍ରୟ କରି ବୁଲନ୍ତି ।

ଥରେ ଏହି ରଜ ପର୍ବର ଅଳ୍ପଦିନ ପୂର୍ବରୁ ଜଣେ ଜଣେ ଯୁବକ ଶଙ୍ଖାରୀ ଶଙ୍ଖା ପସରା ମୁଣ୍ଡରେ ଧରି ମଧ୍ୟାହ୍ନ ସମୟରେ

ଭୁଆସୁଣୀ ଠାକୁରାଣୀ ମନ୍ଦିର ସଂଲଗ୍ନ ବିସ୍ତୀର୍ଣ୍ଣ ଦେଖାଦଣ୍ଡା ମଧ୍ୟସ୍ଥିତ ଶଗଡ଼ ସରି ଧୂସର ରାସ୍ତାରେ ତଳ ଅଞ୍ଚଳ ଗ୍ରାମମାନଙ୍କୁ ଶଙ୍ଖା ବିକ୍ରୟ ଉଦ୍ଦେଶ୍ୟରେ ଯାଉଥିଲେ । ଠିକ୍ ଦଣ୍ଡାର ମଧ୍ୟଭାଗରେ ଜଣେ ସୁନ୍ଦର ଅନୁଢ଼ା ବାଳିକା କୁଲେଇ ଓ କେତେଗୋଟି ଟ୍ରେଛ ଟ୍ରେଛ ମାଉଣୀ ଧରି ଶଗଡ଼ ସରି ଧୂଳିରେ ଧୂଳି ଖେଳ ଖେଳୁଥିଲା । ଶଙ୍ଖାରୀ ଏପରି ପ୍ରଚଣ୍ଡ ସୂର୍ଯ୍ୟ କିରଣରେ ଘର୍ମାକ୍ତ ବାଳିକାଟିକୁ ଦେଖି ତାହାପ୍ରତି ସ୍ନେହାବିଷ୍ଟ ହୋଇ କହିଲେ, "ମା ! ଏଭଳି ପ୍ରଖର ଖରାରେ ତାତିଲା ବାଲିରେ ଏକୁଟିଆ ବସି ଖେଳିବା କ'ଣ ତୋ ପକ୍ଷେ ଉଚିତ ? ତୋର ବାପ ମା ତୋତେ ଏ ଅସମୟରେ ଘରୁ ଖେଳିବା ପାଇଁ ଛାଡ଼ିଦେଲେ କିପରି ? ଯା, ଘରକୁ ଚାଲି ଯା ।" ବାଳିକାଟି ଉତ୍ତର ଦେଲା "ମୁଁ ଏଠାରେ ଜଣେ ଶଙ୍ଖାରୀ ଅପେକ୍ଷାରେ ଥିଲି । ତେବେ ଖାଲିଟାରେ ବସିବି କାହିଁକି, କୁଲେଇ ମାଉଣୀ ଧରି ଖେଳୁଛି । ତୁମ ପଶରାରେ ଟଙ୍ଖା ଅଛି ପରା, ମୋତେ ହଳେ ଶଙ୍ଖା ଚୂଡ଼ି ଦିଅ । ମୁଁ ରଜ ପର୍ବରେ ପିନ୍ଧିବି । ତୁମ ଶଙ୍ଖାର ଦାମ୍ କିନ୍ତୁ ମୁଁ ଦେଇ ପାରିବି ନାହିଁ । ଟଙ୍ଖା ଦାମ୍ ବାବଦକୁ ଏହି ଫୁଲ ମାଳାଟି ନିଅ ।" ଶଙ୍ଖାରୀ ଝିଅଟିକୁ ପଚାରିଲେ, "ତୁମ ଘର କେଉଁଠି ? ତୁମ ବାପାଙ୍କର ନାମ କ'ଣ ?" ବାଳିକା କହିଲା, "ମୋର ତ ବାପା, ମା ନାହାନ୍ତି କିନ୍ତୁ ଏ ଦୁନିଆରେ ସମସ୍ତେ ମୋର ପୁଅ ଝିଅ ଅଟନ୍ତି ।"

ଶଙ୍ଖାରୀ ବାଳିକା କଥାର ଗୂଢ଼ାର୍ଥ କିଛି ବୁଝି ନ ପାରି ବିଦ୍ରୂପ ମିଶା କର୍କଶ ଭାଷାରେ କହିଲା, "ଏଭଳି ଜଣେ ଅନାଥିନୀ ଝିଅର ଶଙ୍ଖା ପିନ୍ଧିବାକୁ ଏତେ ସଉକ କାହିଁକି ?" ଏତିକି ମାତ୍ର କହି ଶଙ୍ଖାରୀ ବାଳିକାକୁ ତାଚ୍ଛଲ୍ୟ ଭରା ଦୃଷ୍ଟିରେ ଚାହିଁ ଦ୍ରୁତ

ଗଣ୍ଡରେ ନିଜର ଗନ୍ତବ୍ୟ ପଥରେ ଚାଲିଗଲି । ବାଳକ। ଶଙ୍ଖାସୁରକୁ ପଛରୁ ଶୁଣାଇ କହିଲି, "ମୋତେ ଯେ ଅବଜ୍ଞା କରେ, ସେ ଧ୍ୱଂସର ନିକଟବର୍ତ୍ତୀ ହୋଇଥାଏ ।" ବାଳକ। କଥା ଶୁଣିବା ମାତ୍ରେ ଶଙ୍ଖାସୁର ପଶ୍ଚାତ୍‌ଭାଗକୁ ଦୃଷ୍ଟି ଫେରାଇ ଦେଖିଲି, ବାଳକାଟି ଅନ୍ତର୍ହିତା ହୋଇଛି । ପଶାସୁର ତାହାକୁ କୌଣସି ପ୍ରେତାତ୍ମା ବୋଲି ମନେକରି ଶଙ୍କିତ ପ୍ରାଣରେ ଅଗ୍ରସର ହେଲା । ପ୍ରାୟ ଏକ ଘଣ୍ଟା ପୂର୍ବାଭିମୁଖେ ଗତି କଲା ପରେ ବର୍ତ୍ତମାନର ଏରସମା ଗ୍ରାମ ପୂର୍ବ ଦିଗବର୍ତ୍ତୀ ଗହ୍ୱର ବିଲରେ ତୃଷାତୁର ଅବସ୍ଥାରେ ଶଙ୍ଖାସୁରଟି ପ୍ରାଣତ୍ୟାଗ କରିଥିଲା । ସେହି ଦିନଠାରୁ ସେହି ସ୍ଥାନଟିର ପ୍ରଚଳିତ ନାମ ଶଙ୍ଖାସୁର ହୋଇଅଛି । ଅଧୁନା "ଶଙ୍ଖାସୁର ବନ୍ଧ" ନାମରେ ଉକ୍ତ ସ୍ଥାନଟି ଏ ଅଞ୍ଚଳର ସର୍ବଜନ ପରିଚିତ ।

ସହୃଦୟ ପାଠକ ପାଠିକା ବୃନ୍ଦ, ଉଲ୍ଲିଖିତ କିମ୍ବଦନ୍ତୀକୁ ଯଦି ଆପଣମାନେ କପୋଳକଳ୍ପିତ ବୋଲି ମନେ ନ କରି ସତ୍ୟ ବୋଲି ମନେକରନ୍ତି, ତେବେ ଜଗଜ୍ଜନନୀ ଆଦ୍ୟାଶକ୍ତି ଦୁର୍ଗା ଦେବୀଙ୍କର ସନ୍ତାନ ପ୍ରତି ଏତାଦୃଶ ଅସହିଷ୍ଣୁତା ପ୍ରତି ଆପଣମାନଙ୍କ ମନରେ ନିଶ୍ଚିତରୂପେ ସନ୍ଦେହ ତଥା ଅସୂୟା ଭାବ ଜାଗ୍ରତ ହେବା ସ୍ୱାଭାବିକ । କାରଣ ସନ୍ତାନର ଏପରି ଏକ ସାମାନ୍ୟ ଅପରାଧ ପାଇଁ ବାତ୍ସଲ୍ୟମୟୀ ଜନନୀ କେବେ ନିଜର ସ୍ନେହାସ୍ପଦ ଶିଶୁ ପ୍ରତି ପ୍ରାଣଦଣ୍ଡ ଶାସ୍ତି ବିଧାନ କରିପାରେ ନା । ମାନବ ଜାତିର ସର୍ବପ୍ରଥମ ଧର୍ମ ଗ୍ରନ୍ଥ ବେଦ ପ୍ରତିପାଦିତ ଦାର୍ଶନିକ ସିଦ୍ଧାନ୍ତାନୁଯାୟୀ ଜୀବର ପୂର୍ବକୃତ କର୍ମଫଳ ବା ପ୍ରାରବ୍ଧ ଭୋଗ ନିମିତ୍ତ ଏ ଜାତୀୟ ଆକସ୍ମିକ ଗୁରୁତର ଦଣ୍ଡ ବିଧାନ ଆଦି ତାର ନିରବଚ୍ଛିନ୍ନ ଜୀବନ ପ୍ରବାହର ବିଧି ନିର୍ଦ୍ଦିଷ୍ଟ ଆବର୍ତ୍ତ ରୂପେ,

ପୂର୍ବରୁ ସ୍ଥିରିକୃତ ହୋଇଥାଏ । ସୁତରାଂ ଏ ଜାଗାସ୍ଥ କେତେକ ଦୃଷ୍ଟାନ୍ତରେ ଦେବ, ମାନବ, ରାକ୍ଷସ ବା ପ୍ରେତାଦିଙ୍କର କୌଣସି ଦୁର୍ଭାଗ୍ୟ ଗ୍ରସ୍ତ ଜୀବ ପ୍ରତି ଅଶୁଭ ଦୃଷ୍ଟିପାତ ବା ଅଭିଶାପାଦି ନୈମିତ୍ତିକ ଉପସ୍ଥିତ କାରଣ ମାତ୍ର ହୋଇଥାଏ ।

ରଜା ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିବା ମୁହୂର୍ତ୍ତରେ, ହଠାତ୍ ସର୍ଦ୍ଦାରଙ୍କୁ ପାଖକୁ ଡାକି ଏହି ସ୍ଥାନଟିରେ ଏକ ବ୍ରାହ୍ମଣ ଶାସନ ନୂତନ କରି ବସାଇବାର ଇଚ୍ଛା ପ୍ରକାଶ କରିଥିଲେ ଏବଂ ଓଡ଼କଣାର ଅଧିଷ୍ଠାତ୍ରୀ ଭୁଆସୁଣୀ ଠାକୁରାଣୀଙ୍କର ବିଜେସ୍ଥଳୀ ସଂଲଗ୍ନ ଦକ୍ଷିଣ ଦିଗସ୍ଥିତ ବିସ୍ତୀର୍ଣ୍ଣ ପତିତ ଅନାବାଦୀ ଭୂମି ଖଣ୍ଡିକୁ ଠାକୁରାଣୀଙ୍କ ଖେଳ ପଡ଼ିଆ ରୂପେ ସଦର ସହିତ ସଂରକ୍ଷିତ କରିବା ନିମିତ୍ତ ସର୍ଦ୍ଦାରଙ୍କୁ ଆଦେଶ କରିଥିଲେ । ସେହି ଦିନଠାରୁ ଏହି ପଡ଼ିଆର ନାମ "ଦେଖା ଦଣ୍ଡା" ହୋଇଅଛି । ଏହାର ଆୟତନ ବା କ୍ଷେତ୍ରଫଳ ୧୨ ବାଟୀ, ୧୨ ମାଣ, ୧୨ ଗୁଣ୍ଠ ଓ ୧୨ ବିଶ୍ୱା ବୋଲି କଥିତ ଅଛି ।

ସମୟ ଚକ୍ରର ଆବର୍ତ୍ତନରେ, ଓଡ଼ିଶା ତଥା ଭାରତ ବର୍ଷରେ ବହୁ ରାଜତାନ୍ତ୍ରିକ ପରିବର୍ତ୍ତନ ସଂଘଟିତ ହୋଇଥିଲେ ମଧ୍ୟ, ଏହି "ଦେଖା ଦଣ୍ଡା" ଏ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଭାବେ ସଂରକ୍ଷିତ ଅଛି । ସ୍ୱୟଂ ଭୁଆସୁଣୀ ଦେଖା ଦେଲେଇ ଓ ମାଉଣୀ ସାହାଯ୍ୟରେ ଅବଧି ଏହି ପଡ଼ିଆରେ ଲୋକ ଚକ୍ଷୁର ଅନ୍ତରାଳରେ ଧୂଳି କ୍ରୀଡ଼ା କରୁଥିବାର ଏକ ସରଳ ବିଶ୍ୱାସ ଏ ଅଞ୍ଚଳର ଜନସାଧାରଣଙ୍କ ମଧ୍ୟରେ ଜାଗରୁକ ରହିଛି ।

ଠାକୁରାଣୀଙ୍କର ମହିମା କେବଳ ଏହି ଅଞ୍ଚଳର କ୍ଷୁଦ୍ର ପରିଶର ମଧ୍ୟରେ ସୀମାବଦ୍ଧ ନୁହେଁ । କଟକ ଓ ପୁରୀ ଜିଲ୍ଲାର ଦୂର

ଦୂରାନ୍ତ ସ୍ଥାନମାନଙ୍କରେ ପ୍ରଶସ୍ତି ଲାଭ କରିଥିବାର ମଧ୍ୟ ଦେଖାଯାଏ । ଏହି ଅଞ୍ଚଳମାନଙ୍କରୁ ଜ୍ୱରାଦି ପୀଡ଼ିତ ଶିଶୁ ବା ମୂକ, ଖଞ୍ଜ ଶିଶୁମାନଙ୍କର ପିତାମାତାମାନେ, ଆରୋଗ୍ୟ ଲାଭ କାମନାରେ ଠାକୁରାଣୀଙ୍କ ନିକଟକୁ ସେମାନଙ୍କୁ ନେଇ ଆସିଥାନ୍ତି । ଠାକୁରାଣୀଙ୍କର ପ୍ରିୟ କ୍ରୀଡ଼ନକ କୁଲେଇ, ମାଉଣୀ ଉପହାର ଦେଇ ଠାକୁରାଣୀଙ୍କ ଠାରେ ଶିଶୁର ଆରୋଗ୍ୟ କାମନା କରନ୍ତି ଏବଂ ଅଧିକାଂଶ ସଫଳ କାମ ହେବାର ମଧ୍ୟ ଲକ୍ଷିତ ହୁଏ ।

ରାଜଧାନୀକୁ ବାହୁଡ଼ି ଯିବା ପରେ, ରାଜା କାଳବଳମ୍ଭ ନିକଟ ପୁରୀ ଜିଲ୍ଲାର ବୀର ଶ୍ରୀରାମପୁର ଶାସନରୁ ଏକ ନିଷ୍ଠାବାନ୍ ବ୍ରାହ୍ମଣ ପରିବାରଙ୍କୁ ସସମ୍ମାନେ ନିଜ ରାଜଧାନୀକୁ ଅଣାଇ, ନିଜର ଏକ ଦାୟିତ୍ୱ ସମ୍ପନ୍ନ କର୍ମଚାରୀଙ୍କ ଦ୍ୱାରା, ଭୁଆସୁଣୀ ଠାକୁରାଣୀଙ୍କ ନିକଟସ୍ଥ ନାଲୁ ସର୍ଦ୍ଦାରଙ୍କ ଆଉଡ଼ାକୁ ପଠାଇ ଦେଇଥିଲେ । ରାଜାଙ୍କ ଆଦେଶାନୁଯାୟୀ; ବ୍ରାହ୍ମଣ ପରିବାରଙ୍କୁ ତତ୍କାଳୀନ ଅସ୍ଥାୟୀ ତଲଙ୍ଗ ଗ୍ରାମରେ ଅବସ୍ଥାପିତ କରାଯାଇଥିଲା । ରାଜା ନିଜେ ଶକ୍ତି ଉପାସନାର ପକ୍ଷପାତି ଥିବାରୁ ଏହି ବ୍ରାହ୍ମଣ ପରିବାରର ଇଷ୍ଟ ଦେବୀ ରୂପେ, ଏକ ଶକ୍ତି ବିଗ୍ରହ ସହ ଆବଶ୍ୟକ ପରିମାଣର ଭୂସମ୍ପତ୍ତି ଦାନ କରିଥିଲେ । ରାଜାଙ୍କ ନାମାନୁସାରେ ଏହି ଗ୍ରାମର ନାମ "କୃଷ୍ଣଚନ୍ଦ୍ରପୁର" ରଖାଗଲା । ଗ୍ରାମର ପୂର୍ବ ତଲଙ୍ଗ ନାମର ତାତ୍ପର୍ଯ୍ୟ ଏହି ଯେ; ପୂର୍ବେ ଏ ସ୍ଥାନର ପାଣିପାଟ ମଧ୍ୟରେ ଥିବା ତଲଙ୍ଗା ନାମକ ଏକ ତୃଣ ଜାତୀୟ ଉଦ୍ଭିଦ ବହୁଳ ପରିମାଣରେ ଜାତ ହେଉଥିଲା । ଏ ଅଞ୍ଚଳର ଦରିଦ୍ର କୁଟୀର ଶିଳ୍ପୀମାନେ ଏହି ତଲଙ୍ଗା ସଂଗ୍ରହ କରି ଶପ-ମଶିଣା ବୁଣି, କେତେକାଂଶରେ ନିଜର ଜୀବିକା ନିର୍ବାହ କରୁଥିଲେ ।

ରାଜା କୃଷ୍ଣଚନ୍ଦ୍ର ଷେଣ୍ଟଙ୍କର ସ୍ୱ ପ୍ରତିଷ୍ଠିତ ଏହି କୃଷ୍ଣଚନ୍ଦ୍ର ପୁର ଗ୍ରାମର ଶ୍ରୀ ବୃଦ୍ଧି ନିମିତ୍ତ ଓ ନୂତନ ସ୍ଥାପିତ ବ୍ରାହ୍ମଣ ପରିବାରର ସହାୟତା ଉଦ୍ଦେଶ୍ୟରେ ରାଜା ନିଜ ରାଜ୍ୟର ବିଭିନ୍ନ ସ୍ଥାନରୁ ସ୍ୱାଇଁ, ନାୟକ, ବିଶ୍ୱାଳ ଏବଂ ବାରିକ ସଙ୍ଖ୍ୟାଧାରୀ ୪ ଗୋଟି ପରିବାରଙ୍କୁ ଅଣାଇ ଏହି ଗ୍ରାମରେ ବସତି ଯୋଗାଇ ଦେଇଥିଲେ । ଅଧୁନା ଯେଉଁ ସମୟରେ ଏହି ଗ୍ରାମର ଇତିହାସ ଲେଖା ଯାଉଅଛି, ସେତେବେଳକୁ ଉକ୍ତ ବ୍ରାହ୍ମଣ ପରିବାରଟିର କ୍ରମ ବୃଦ୍ଧି ଘଟି ଏହା ୧୧ଟି ପରିବାରରେ ବିଭକ୍ତ ହୋଇଅଛନ୍ତି । ଗ୍ରାମର ଅନ୍ୟ ପରିବାର ଗୁଡ଼ିକ ମଧ୍ୟ ଏକାଧିକ ପରିବାରରେ ପରିଣତ ହୋଇଅଛନ୍ତି ।

ଶ୍ରୀ ଭୂଆସୁଣୀ ଠାକୁରାଣୀ ଓ ଉପରୋକ୍ତ ବ୍ରାହ୍ମଣ ପରିବାରଙ୍କର ଇତିବୃତ୍ତି, କୃଷ୍ଣଚନ୍ଦ୍ରପୁର ଗ୍ରାମର ଐତିହ୍ୟର ପ୍ରାଣକେନ୍ଦ୍ର ସ୍ୱରୂପ । ସୁତରାଂ ଏହି ଉଭୟଙ୍କର ଐତିହାସିକ ବିବରଣୀ ପ୍ରାଞ୍ଜଳ ଓ ନିର୍ଭୁଲ ହୋଇ ପାରିଲେ, ଗ୍ରାମ ଇତିହାସ ପୂର୍ଣ୍ଣାଙ୍ଗପ୍ରାପ୍ତିରେ ବିଶେଷ ସହାୟକ ହେବ ।

ଇତି ପୂର୍ବରୁ ଶ୍ରୀ ଭୂଆସୁଣୀ ଠାକୁରାଣୀଙ୍କ ଐତିହାସିକ ବିବରଣୀ ଅନେକାଂଶରେ ବିବୃତ ହୋଇଅଛି । ଠାକୁରାଣୀଙ୍କର ତାତ୍କାଳିକ ସେବକ ପଣ୍ଡା ମହାଶୟ ବିପର୍ନିକ ଥିବାର ଉଲ୍ଲେଖ କରାଯାଇଥିଲା । ଏହି ସେବକ ପରିବାରର ବଂଶ ରକ୍ଷା ଅଭିପ୍ରାୟରେ ରାଜା କୃଷ୍ଣଚନ୍ଦ୍ର ତାହାଙ୍କର ଦ୍ୱିତୀୟ ଦାର ଗ୍ରହଣର ବ୍ୟବସ୍ଥା ସେହି ସମୟରେ ହିଁ କରାଇ ଦେଇଥିଲେ । ଆଶ୍ଚର୍ଯ୍ୟର କଥା ଯେ, ଅଧୁନା ଆଶାତୀତ ଭାବେ ବିଶ୍ୱର ଜନ

ସଂଖ୍ୟା ବୃଦ୍ଧି ପ୍ରାପ୍ତ ହେଉଥିଲେ ମଧ୍ୟ, ଉକ୍ତ ସେବକ ପଣ୍ଡା ପରିବାର ଏକରୁ, ଦୁଇ ମଧ୍ୟ ହୋଇ ପାରୁନାହାଁନ୍ତି ।

ରାଜା ନିଜ ନାମରେ ନାମିତ କୃଷ୍ଣଚନ୍ଦ୍ରପୁର ଗ୍ରାମରେ ଯେଉଁ ନୂତନ ବ୍ରାହ୍ମଣ ପରିବାରଙ୍କୁ ଅବସ୍ଥାପିତ କରାଇଥିଲେ, ବହୁ ଅନୁସନ୍ଧାନ କରି ମଧ୍ୟ ସେହି ପରିବାରର ମୂଳ ବା ମୁଖ୍ୟ ବ୍ୟକ୍ତିଙ୍କର ନାମ ଆବିଷ୍କାର କରାଯାଇ ପାରିଲା ନାହିଁ ।

ଊନବିଂଶ ଶତାବ୍ଦୀର ଶେଷ ଭାଗକୁ କୃଷ୍ଣଚନ୍ଦ୍ରପୁର ବ୍ରାହ୍ମଣ ପରିବାରର "କପିଳ ମହାପାତ୍ର" ନାମକ ଜନୈକ ବ୍ୟକ୍ତି ଏହି ଅଞ୍ଚଳର ଏକ ପ୍ରଭାବଶାଳୀ ବ୍ୟକ୍ତି ରୂପେ ଖ୍ୟାତି ଲାଭ କରିଥିଲେ । ସେ ଏକାଧାରରେ ବୟୁତ୍ପନ୍ନ, ବିଭବଶାଳୀ, ବିଦ୍ବୋତ୍ସାହୀ ତଥା ଧର୍ମପ୍ରାଣ ବ୍ୟକ୍ତି ଥିଲେ । ତତ୍କାଳୀନ ଇଂରେଜ ସରକାରଙ୍କର ପ୍ରଚଳିତ ଜମିଦାରୀ ପ୍ରଥାନୁସାରେ ଏହାଙ୍କର କିଛି ଜମିଦାରୀ ଓ ମକଦ୍ଦମୀ ମାହାଲ ଥିଲା ।

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଦଖଲକୁ ନେବା ପରେ, ସେମାନେ ମୁଖ୍ୟତଃ ଓଡ଼ିଶାକୁ ଦୁଇଗୋଟି ରାଜନୈତିକ ବିଭାଗରେ ବିଭକ୍ତ କରିଥିଲେ । ଯଥା:-ଗଡ଼ଜାତ ଶାସନ ଓ ମୋଗଲବନ୍ଦୀ ଶାସନ । କଟକ, ପୁରୀ ଓ ବାଲେଶ୍ବର ଏହି ତିନି-ଗୋଟି ଜିଲ୍ଲାରେ ଯେଉଁସବୁ କ୍ଷୁଦ୍ର କ୍ଷୁଦ୍ର ରାଜାମାନେ ଏକ ଏକ କ୍ଷୁଦ୍ରାତିକ୍ଷୁଦ୍ର ଅଞ୍ଚଳରେ ରାଜତ୍ବ କରି ପରସ୍ପର ଯୁଦ୍ଧ ବିଗ୍ରହରେ ବ୍ୟାପୃତ ଥିଲେ; ଇଂରେଜ-ମାନେ ସେହି ସବୁ ରାଜାଙ୍କର ରାଜତ୍ବ ରାଜ୍ୟାପ୍ତ

କରି ନିଜର ଖାସ୍ ଶାସନାଧୀନକୁ ନେଇ ଯାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ, ଇଂରେଜମାନଙ୍କ ପୂର୍ବବର୍ତ୍ତୀ ମରହଟ୍ଟା ଓ ମୋଗଲ ଶାସକମାନେ ଏହି ସବୁ ଅଞ୍ଚଳର ତଥା କଥିତ କ୍ଷୁଦ୍ର ରାଜାମାନଙ୍କୁ ଗାଦିଚ୍ୟୁତ କରି ସେମାନଙ୍କୁ ଜିଲ୍ଲାଧିକାରୀ ଜମିଦାର ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ଚତୁର ଇଂରେଜ ସରକାର ଏହିମାନଙ୍କର ଆଧିପତ୍ୟକୁ ସମୂଳେ ଉତ୍ପାଟନ କରି ନିଜର ଦୃଢ଼ ଶାସନ ପ୍ରତିଷ୍ଠା କରିବାର ପ୍ରଥମ ସୁଯୋଗ ଉପରୋକ୍ତ ତିନୋଟି ଜିଲ୍ଲାରେ ହିଁ ଲାଭ କରିଥିଲେ । ଏହି ସବୁ ଅଞ୍ଚଳ ମୋଗଲବନ୍ଦୀ ନାମରେ କଥିତ ।

ଓଡ଼ିଶାର ପଶ୍ଚିମାଞ୍ଚଳର ଶ୍ରେଷ୍ଠ, ବଡ଼ ରାଜାମାନଙ୍କୁ ଇଂରେଜମାନେ କରଦ ରାଜା ରୂପେ ସ୍ୱୀକୃତି ପ୍ରଦାନ କରି, ସେମାନଙ୍କୁ ନିଜ ବାହୁ ଛାୟା ତଳେ ରଖି, ସ୍ୱଳ୍ପ ବ୍ୟୟରେ ଓଡ଼ିଶା ତଥା ସମଗ୍ର ଭାରତ ବର୍ଷର ଶାସନ ଦାୟିତ୍ୱ ସୁଚତୁର ଭାବେ ତୁଲାଇ, ସେମାନଙ୍କର ଆସନ ସୁଦୃଢ଼ କରି ପାରିଥିଲେ । ଏହି ସବୁ ଅଞ୍ଚଳ ଗଡ଼ଜାତ ନାମରେ ନାମିତ ଥିଲା ।

ଇଂରେଜ ଶାସନର ପ୍ରାକ୍‌କାଳରେ ବଙ୍ଗ, ବିହାର, ଓଡ଼ିଶା ଏକ ରାଜ୍ୟ ରୂପେ ଶାସିତ ହେଉଥିଲା । କଲିକତା ଏହି ରାଜ୍ୟର ରାଜଧାନୀ ଥିଲା । ସୁତରାଂ ରାଜ୍ୟର ସମସ୍ତ ରାଜା ଓ ଜମିଦାରମାନଙ୍କର ରାଜସ୍ୱ ଦେୟ କଲିକତାଠାରେ ହିଁ ବର୍ଷରେ ଦୁଇଗୋଟି ନିର୍ଦ୍ଦିଷ୍ଟ ସମୟରେ ଦେବାକୁ ହେଉଥିଲା । ଏହି ରାଜସ୍ୱ ଆଦାୟ ପାଇଁ ଏକ ସୂର୍ଯ୍ୟାସ୍ତ ଆଇନ ପ୍ରଚଳିତ ଥିଲା । ଅର୍ଥାତ୍ ରାଜସ୍ୱ ଆଦାୟର ନିର୍ଦ୍ଦିଷ୍ଟ ଦିବସର ସୂର୍ଯ୍ୟାସ୍ତ ପୂର୍ବରୁ

ରାଜା କିମ୍ବା ଜମିଦାରମାନେ ନିଜ ନିଜର ଦେୟ କର, ସମ୍ପୃକ୍ତ ଦପ୍ତରରେ ଦାଖିଲ କରି ନପାରିଲେ ସେମାନଙ୍କର ରାଜ୍ୟ ବା ଜମିଦାରୀ ନିଲାମ ବିକ୍ରି କରି ଦିଆ ଯାଉଥିଲା । ସୁତରାଂ ରାଜଧାନୀର ସୁଦୂରବର୍ତ୍ତୀ ଓଡ଼ିଶାର ଯେ କୌଣସି ଧନୀ ବ୍ୟକ୍ତିଙ୍କ ପକ୍ଷେ କଲିକତା କଲେକ୍ଟରୀ ଦପ୍ତରରୁ ଜମିଦାରୀ ନିଲାମ କ୍ରୟ କରିବା ସମ୍ଭବପର ନଥିଲା । ଫଳତଃ ସେହି ସମୟରୁ ବଙ୍ଗୀୟ ଧନୀ ବ୍ୟକ୍ତିମାନେ ମାଛ, ଶୁଖୁଆ ପରି ଓଡ଼ିଶାର ଜମିଦାରୀ ମାହାଲ ସବୁ ନିଲାମ କ୍ରୟ କରି ଓଡ଼ିଶାର ଜମିଦାର ବୋଲାଇଲେ ।

ଏହି ସମୟରେ ଜନୈକ ବଙ୍ଗୀୟ ବିଶିଷ୍ଟ ଧନିକ ଠାକୁର ପରିବାର ପଣ୍ଡୁଆ ତଉଜିକୁ ସୂର୍ଯ୍ୟାସ୍ତ ନିଲାମ ସୂତ୍ରରେ କଲିକତାର ସମ୍ପୃକ୍ତ ସରକାରୀ ଇଜିଲାସରୁ କ୍ରୟ କରି ପଣ୍ଡୁଆ ଇଷ୍ଟେଟର ଜମିଦାରୀ ସ୍ୱତ୍ତ୍ୱାଧିକାରୀ ହୋଇଥିଲେ । ଏହି ପରିବାର ସମଗ୍ର ଭାରତବର୍ଷରେ ସୁପରିଚିତ । ଦ୍ୱାରିକାନାଥ ଠାକୁର, ମହର୍ଷି ଦେବେନ୍ଦ୍ରନାଥ ଠାକୁର ଓ ବିଶ୍ୱକବି ରବୀନ୍ଦ୍ର-ଠାକୁର ତତ୍କାଳୀନ ଭାରତୀୟ ମନୀଷୀମାନଙ୍କ ମଧ୍ୟରେ ପ୍ରସିଦ୍ଧନାମା ବ୍ୟକ୍ତି ଅଟନ୍ତି । ଏହି ମହାତ୍ମାମାନେ ନିଜ ଜମିଦାରୀର ସଦର ମହକୁମା ପଣ୍ଡୁଆକୁ ଆସି ସାମୟିକଭାବେ ଅବସ୍ଥାନ କରନ୍ତି । ଏମାନଙ୍କ ପାଇଁ ପଣ୍ଡୁଆ ଜମିଦାରୀ ମାହାଲର ଜନସାଧାରଣ ମଧ୍ୟ ଗର୍ବ ଅନୁଭବ କରନ୍ତି । ବିଶ୍ୱକବିଙ୍କ ରଚିତ "ପ୍ରିୟମ୍ବଦା" ନାଟକ ଓ ଗୀତାଞ୍ଜଳୀ ପୁସ୍ତକର କେତେକ ପ୍ରାଣସ୍ପର୍ଶୀ ସଙ୍ଗୀତ ତାହାଙ୍କର ପଣ୍ଡୁଆ ଜମିଦାରୀ ପ୍ରାସାଦରେ ପ୍ରଣିତ ହୋଇଅଛି ଏବଂ ଏଥିରେ ଏ ଅଞ୍ଚଳର ସୌମ୍ୟ ପ୍ରାକୃତିକ ବର୍ଣ୍ଣନା ଓ ସରଳ ଲୋକଚରିତ୍ରର ସାଫଲ୍ୟ ଅଙ୍କିତ କରାହୋଇଛି ।

କୃଷ୍ଣଚନ୍ଦ୍ରପୁର ଗ୍ରାମର ବଶିଷ୍ଟ ବ୍ୟକ୍ତି କପିଳ ମହାପାତ୍ର ଠାକୁର ଜମିଦାରିଙ୍କର ଏକ ସମ୍ମାନିତ ପ୍ରଜା ଥିଲେ । ଠାକୁର ଜମିଦାର ତାଙ୍କ ଇଷ୍ଟେଟ୍‌କୁ ପ୍ରାୟ ବର୍ଷକେ ଥରେ ପରିଦର୍ଶନରେ ଆସିବାବେଳେ ମହାପାତ୍ରେ ସବାରିଯୋଗେ ତାହାଙ୍କ ସାକ୍ଷାତକୁ ଯାଉଥିଲେ । ସ୍ଥୂଳତଃ ଇଂରେଜମାନଙ୍କ ସାମନ୍ତବାଦମୂଳକ ଶାସନପଦ୍ଧତି ଅନୁଯାୟୀ କପିଳ ମହାପାତ୍ର ସମାଜ ମଧ୍ୟରେ ଜଣେ ସମ୍ମାନନୀୟ ସାମନ୍ତ ବ୍ୟକ୍ତିରୂପେ ପ୍ରତିଷ୍ଠିତ ଥିଲେ ।

ମହାପୁରୁଷ ଶଙ୍କରାଚାର୍ଯ୍ୟଙ୍କର ଭାରତରେ ବ୍ରାହ୍ମଣ୍ୟ ଧର୍ମର ସଂସ୍କାରମୂଳକ ପ୍ରଚାର ସମୟରୁ ବ୍ରାହ୍ମଣମାନେ ଶୈବଧର୍ମୀ ହୋଇ-ଥିଲେ । ଫଳତଃ ପ୍ରତ୍ୟେକ ବ୍ରାହ୍ମଣ ଶାସନରେ ସେହି ସମୟରୁହିଁ ଶିବ ଲିଙ୍ଗମାନ ପ୍ରତିଷ୍ଠିତ ହୋଇଥିଲେ । ଏହି କୃଷ୍ଣଚନ୍ଦ୍ରପୁର ବ୍ରାହ୍ମଣ ଶାସନ ମଧ୍ୟରେ 'ନୀଳକଣ୍ଠେଶ୍ୱର' ଶିବ ଲିଙ୍ଗ ପ୍ରତିଷ୍ଠା କରାଯାଇଥିଲା । ଅଧୁନା ଏହି ବ୍ରାହ୍ମଣ ଶାସନରେ ଯେଉଁ ହରହର ମନ୍ଦିର ରହିଛି; ଶ୍ରୀ କପିଳ ମହାପାତ୍ର ଏହି ମନ୍ଦିରର ପ୍ରତିଷ୍ଠାତା ଅଟନ୍ତି । ଏହି ମନ୍ଦିର ସମ୍ପର୍କରେ କେତେକ ତଥ୍ୟମୂଳକ ବିବରଣୀ ଏଠାରେ ପ୍ରଦତ୍ତ ହେଲା ।

କପିଳ ମହାପାତ୍ରଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ବାଞ୍ଛାନିଧି ମହାପାତ୍ର । ସେ ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ହୋଇ ପୁରୀ ଜିଲ୍ଲା କଲେକ୍ଟରଙ୍କ ଇଜଲାସରେ ପେସ୍କାର କାର୍ଯ୍ୟ କରୁଥିଲେ । ସେ ମହାଶୟ ବାଲ୍ୟ-କାଳରୁ ଅତିଶୟ ସରଳ ଓ ଧର୍ମପରାୟଣ ବ୍ୟକ୍ତି ଥିଲେ । ଆର୍ଯ୍ୟ ବ୍ରାହ୍ମଣର ଗୁଣ, ଶାନ୍ତିମାନ ଏହାଙ୍କ ଠାରେ ପୂର୍ଣ୍ଣତଃ ଲକ୍ଷିତ ହେଉଥିଲା । ସେ ପୁରୀରେ ଅବସ୍ଥାନ କରୁଥିବାବେଳେ ପ୍ରତ୍ୟହ

ପ୍ରତ୍ୟୁଷରୁ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀରେ ସ୍ନାନ କରି ଶ୍ରୀ ଜଗନ୍ନାଥ ଦର୍ଶନାନ୍ତେ ନିଜର ରାଜକାର୍ଯ୍ୟ କର୍ତ୍ତବ୍ୟରେ ବ୍ୟାପୃତ ରହୁଥିଲେ । ମୁଁ ତାଙ୍କ ନିଜ ମୁଖରୁ ତାଙ୍କର ରହସ୍ୟମୟ ଜୀବନଚରିତ ଅବଗତ ହୋଇଛି । ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀରେ ଦକ୍ଷିଣ ତଟସ୍ଥିତ ଜନୈକ ପଶ୍ଚିମା ସାଧୁଙ୍କୁ ସେ ନିୟମିତ ପ୍ରଣାମ କରୁଥିଲେ । ସାଧୁଙ୍କର ଜଣେମାତ୍ର ଶିଷ୍ୟ ତାଙ୍କ ସେବାରେ ନିଯୁକ୍ତ ଥାଆନ୍ତି । ଏକ କ୍ଷୁଦ୍ର କୁଟୀର ଆଭ୍ୟନ୍ତରରେ ସାଧୁଜୀ ଏକ ଉଲଙ୍ଗ ଗୋପୀନାଥ ମଣି ବିଗ୍ରହ ରଖି ଉପାସନା କରନ୍ତି ଏବଂ ପ୍ରତ୍ୟହ ପ୍ରତ୍ୟୁଷରୁ ତାହାଙ୍କୁ କିଛି କ୍ଷୀର ଭୋଗ ଲାଗି କରାଯାଏ । ସାଧୁଜୀ ସର୍ବଦା ଚକ୍ଷୁ ମୁଦ୍ରିତ କରି ଧ୍ୟାନମଗ୍ନ ଥିବାର ଦେଖାଯାଏ । ଶ୍ରୀ ବାଞ୍ଛାନିଧି ତାହାଙ୍କୁ ଦୈନିକ ପ୍ରଣାମ କଲାବେଳେ ସେ ଅଳ୍ପ ଚକ୍ଷୁ ଉନ୍ମିଳିତ କରି ଟିକିଏ କୋଣେଇ ବାଞ୍ଛାନିଧିଙ୍କ ପ୍ରତି ସ୍ମିତ ହାସ ବଦନରେ ଗୃହୀଁ ପ୍ରସାଦ କ୍ଷୀରଟିକ ଗ୍ରହଣ କରିବା ପାଇଁ ଇଙ୍ଗିତ ଦ୍ୱାରା ତାଙ୍କୁ ଜଣାଇ ଦିଅନ୍ତି । ପ୍ରତ୍ୟହ ଶ୍ରୀ ବାଞ୍ଛାନିଧି ଏହି ନିୟମରେ ସାଧୁଜୀଙ୍କର ଦର୍ଶନ ଓ ପ୍ରସାଦ ଲାଭ କରନ୍ତି ।

ଦିନେ ପାହାନ୍ତା ରାତିରେ ଶ୍ରୀ ବାଞ୍ଛାନିଧି ଏକ ସୁସ୍ୱପ୍ନ ଦେଖିଲେ, ତାହାଙ୍କ ଗୃହଦେବୀ ଶ୍ରୀ ଦୁର୍ଗା ଠାକୁରାଣୀ ତାଙ୍କୁ ସ୍ୱପ୍ନରେ କହୁଛନ୍ତି, "ମୁଁ ସେବାପୂଜାରେ ବିଶେଷ ଅବହେଳିତ ହେଉଛି । ତୁ ବ୍ରାହ୍ମଣ ସନ୍ତାନ ହୋଇ ବିଜାତିର ଗୋଲାମୀଗିରି କଲୁ । ଶୀଘ୍ର ରାଜକାର୍ଯ୍ୟ କର୍ମ ତ୍ୟାଗ କରି ସ୍ୱଗୃହକୁ ଯାଇ ମୋ ସେବାର ଦାୟିତ୍ୱ ଗ୍ରହଣ କର, ନଚେତ ତୋର ବଂଶ ନାଶ ଘଟିବ ।"

ଏହି ସ୍ୱପ୍ନ ପରେ ଶ୍ରୀ ବାଞ୍ଛାନିଧି ଶଯ୍ୟାତ୍ୟାଗ କରି ଅବିଳମ୍ବେ ଇନ୍ଦ୍ରଦ୍ୟୁମ୍ନ ସ୍ନାନକୁ ବାହାରିଗଲେ । ଶାସ୍ତ୍ରୀୟଭାବେ ସ୍ନାନ ସମାପନ କରି ସାଧୁଜୀଙ୍କୁ ପ୍ରଣାମ କଲାବେଳେ ପ୍ରଥମ ଥର ପାଇଁ ସାଧୁଜୀ ମୁଖ ଖୋଲି ବାଞ୍ଛାନିଧିଙ୍କୁ କହିଲେ, "ମୋର କ୍ଷେତ୍ର ରହଣୀ ସମୟ ଶେଷ ହୋଇଛି । ତୁମେ ଏ ଗୋପୀନାଥ ବିଗ୍ରହଙ୍କୁ ନେଇ ନିଜର ଶିବ ମନ୍ଦିରରେ ପ୍ରତିଷ୍ଠା କରି ଏହାଙ୍କର ସେବା ଭାର ଆଜଠାରୁ ଗ୍ରହଣ କର ।" ଏହା କହି ସାଧୁଜୀ ସ୍ୱହସ୍ତରେ ଗୋପୀନାଥ ବିଗ୍ରହଙ୍କୁ ମହାପାତ୍ରଙ୍କ ହସ୍ତରେ ଅର୍ପଣ କରିଦେଲେ ।

ମହାପାତ୍ରଙ୍କର ପାହାନ୍ତା ସ୍ୱପ୍ନ ସହିତ ସାଧୁଜୀଙ୍କ ଆଦେଶ ଉଭୟ ଘଟଣାର ସମନ୍ୱୟ ଫଳରେ ମହାପାତ୍ରଙ୍କର ମନର ସନ୍ଦେହ ଦୂରୀଭୂତ ହେଲା । ସେ ସେହିଦିନର ଯାବତୀୟ ନୈମିତ୍ତିକ କାର୍ଯ୍ୟ କ୍ଷିପ୍ରତାର ସହିତ ସମାପନ ପୂର୍ବକ କଲେକ୍ଟରଙ୍କ ଇଜଲାସରେ ନିଜର କର୍ମତ୍ୟାଗ ପତ୍ର ଦାଖଲ କରି ସଙ୍ଗେ ସଙ୍ଗେ ଗୋପୀନାଥ ବିଗ୍ରହଙ୍କୁ ସ୍କନ୍ଧରେ ବହନ କରି ସ୍ୱଗ୍ରାମକୁ ପଦବ୍ରଜରେ ପ୍ରତ୍ୟାବର୍ତ୍ତନ କଲେ । ଶୁଣିବାକୁ ପାଇଛୁ, ତାଙ୍କର ପିତା ଶ୍ରୀ କପିଳ ମହାପାତ୍ର ଏହାଙ୍କର ସରଳ ସୁଲଭ ଧର୍ମ ପ୍ରାଣ ଚରିତ୍ରର ବାସ୍ତବ ସନ୍ଧାନ ନ ପାଇ ଏହାଙ୍କୁ ପାଗଳ ବୋଲି ଅଭିହିତ କରିଥିଲେ । ପୁତ୍ର ତତ୍କାଳୀନ ସମୟରେ ଏକ ସମ୍ମାନିତ ଚାକିରି ଛାଡ଼ି ସହସା ଗୃହକୁ ପ୍ରତ୍ୟାବର୍ତ୍ତନ କରିବାର ଦେଖି, ସେ ତାହାଙ୍କୁ କେତେକ ଭତ୍ସନା କରିଥିଲେ ମଧ୍ୟ, ପୁତ୍ରଠାରୁ ସବିଶେଷ ବିବରଣୀ ଶୁଣି ନୀରବ ରହିଥିଲେ ଏବଂ ନିଜର ଗୃହ ଦେବୀ ଦୁର୍ଗା, ଗୃହ ଦେବତା ନାରାୟଣ ଓ ନୀଳକଣ୍ଠେଶ୍ୱରଙ୍କର ସେବାର ଦାୟିତ୍ୱ ତାଙ୍କୁହିଁ ଅର୍ପଣ କରିଥିଲେ ।

ସେହି ସ୍ୱମ୍ପୂର୍ତ୍ତ ଶ୍ରୀ ଗୋପୀନାଥ ବିଗ୍ରହ, ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ମନ୍ଦିରରେ ପ୍ରତିଷ୍ଠିତ ହୋଇଛନ୍ତି ଏବଂ ସେହିଦିନ ଠାରୁ ମନ୍ଦିରଟିର ନାମ "ହରିହର" ମନ୍ଦିର ହୋଇଅଛି ।

ଶ୍ରୀ କପିଳ ମହାପାତ୍ରଙ୍କ ଅମଳରେ ମନ୍ଦିରରେ ହିନ୍ଦୁ ଧର୍ମର ନିୟମ ଓ ଲୌକିକ ପ୍ରଥା ଅନୁଯାୟୀ ଯାବତୀୟ ପର୍ବ-ପର୍ବାଣୀ ବିଶେଷ ଆଡ଼ମ୍ବର ସହିତ ଅନୁଷ୍ଠିତ ହେଉଥିଲା । ଏହି ପର୍ବମାନଙ୍କ ମଧ୍ୟରୁ ଦୋଳ, ଚନ୍ଦନ, ଝୁଲଣ, ଦୁର୍ଗାପୂଜା ଓ ରାସଲୀଳା ଉଲ୍ଲେଖ ଯୋଗ୍ୟ ଅଟେ । ଦୋଳ ଓ ଚନ୍ଦନ ପର୍ବ ସମୟରେ ବହୁଲୋକ ସମାଗମରେ ଯାତ୍ରା-ଯାତ୍ରାର ଗହଳି ଏକାଧିକ ଦିବସ ଧରି ଲାଗି ରହୁଥିଲା । ଗ୍ରାମର ଆବାଳ ବୃଦ୍ଧ-ବନିତା ଜାତି ବର୍ଣ୍ଣ ନିର୍ବିଶେଷରେ ଏଥିରେ ଭାଗ ନେଉଥିଲେ ।

ଶ୍ରୀ କପିଳ ମହାପାତ୍ର ଯେପରି ବିତ୍ତଶାଳୀ, ସେହିପରି ବଦାନ୍ୟ ମଧ୍ୟ ଥିଲେ । ବର୍ଷ ମଧ୍ୟରେ ଏକାଧିକ ବାର ବିଭିନ୍ନ ପ୍ରକାରର ଭୋଜି ଏହାଙ୍କ ଦ୍ୱାରା ଆୟୋଜିତ ହେଉଥିଲା । ସମଗ୍ର ଗ୍ରାମବାସୀ ତଥା ଆଖ ପାଖର ଅଧିବାସୀମାନେ ଏଥିରେ ଆପ୍ୟାୟିତ ହେଉଥିଲେ ।

କପିଳ ମହାପାତ୍ରଙ୍କର ଦ୍ୱିତୀୟ ପୁତ୍ର ଶ୍ରୀ ବାଳକୃଷ୍ଣ ମହାପାତ୍ର ବି. ଏ. ଯୋଗ୍ୟତାଧାରୀ ଥିଲେ । ସେ ମଧ୍ୟ ଜ୍ୟେଷ୍ଠ ଭ୍ରାତା ବାଞ୍ଛାନିଧିଙ୍କ ଭଳି ସରଳ, ଧର୍ମପ୍ରାଣ ଓ ଉଦାରମନା ବ୍ୟକ୍ତି ଥିଲେ । ଆମେରିକାର ଏଚ୍. ଏସ୍. ଅଲକଟ୍ ସାହେବ ଓ ରୁଷ ଦେଶର ହେଲେନା ପ୍ରିଟ୍ରିଭ୍ନା ବ୍ଲାଭସ୍କିଙ୍କ ଦ୍ୱାରା ଭାରତରେ ନବପ୍ରତିଷ୍ଠିତ ବ୍ରହ୍ମବିଦ୍ୟା ସମିତିର (Theosophy Society)ର

ସେ ଜଣେ ସାଧକ ଓ ଭକ୍ତ ଥିଲେ । ଶ୍ରୀ ବାଳକୃଷ୍ଣ ବାର୍ଦ୍ଧକ୍ୟର ପ୍ରାକ୍‌କାଳ ପର୍ଯ୍ୟନ୍ତ କଟକ ପ୍ୟାରୀମୋହନ ଏକାଡେମୀ ସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ଥାଇ ଯଥା ସମୟରେ ଅବସର ଗ୍ରହଣ ପୂର୍ବକ ଏହି ବ୍ରହ୍ମ ବିଦ୍ୟାର ସାଧନା କରୁଥିଲେ । ଏହି ସାଧନାରେ ଉତ୍କଳର ସୁନାମଧନ୍ୟ ସାହିତ୍ୟକ ତଥା "ପ୍ରହରାଜ ଭାଷାକୋଷ" ପ୍ରଣେତା ଶ୍ରୀ ଗୋପାଳ ପ୍ରହରାଜ ତାହାଙ୍କର ସହକର୍ମୀ ଥିଲେ । ଶ୍ରୀ ବାଳକୃଷ୍ଣ ଭାରତୀୟ ବ୍ରହ୍ମବିଦ୍ୟା ସମିତିର ଉତ୍କଳ ଶାଖାର ସମ୍ପାଦକ ଥାଇ, ବ୍ରହ୍ମବିଦ୍ୟା ସମିତିର ଇତିହାସ ଓ ବ୍ରହ୍ମବିଦ୍ୟା ସାଧନ ପଦ୍ଧତି ସମ୍ପର୍କୀୟ ଅନେକ ଉପାଦେୟ ଗ୍ରନ୍ଥ ରଚନା କରି ଏ ଗୁଡ଼ିକର ପାଣ୍ଡୁଲିପି ତାହାଙ୍କର ଜନୈକ ଆତ୍ମୀୟଙ୍କ ହସ୍ତରେ ଅର୍ପଣ କରିଥିଲେ । ପରିତାପର ବିଷୟ ସେ ମହାଶୟ ଶ୍ରୀ ବାଳକୃଷ୍ଣ ମହାପାତ୍ରଙ୍କର ପ୍ରତ୍ୟକ୍ଷ ଉତ୍ତରାଧିକାରୀ ହୋଇ ମଧ୍ୟ ଉପରୋକ୍ତ ଉପାଦେୟ ଗ୍ରନ୍ଥମାନଙ୍କର ପ୍ରକାଶନରେ ଅସମର୍ଥ ହୋଇଥିଲେ । ଅବଧି ଏହିସବୁ ଗ୍ରନ୍ଥର କେତେକ ପାଣ୍ଡୁଲିପି ସଂରକ୍ଷିତ ଥିବାର ଶୁଣାଯାଏ ।

ଶ୍ରୀ କପିଳ ମହାପାତ୍ରଙ୍କର ତୃତୀୟ ପୁତ୍ର ଶ୍ରୀ ବ୍ରଜବନ୍ଧୁ ମହାପାତ୍ର ମଧ୍ୟମ ଶିକ୍ଷିତ ଥିଲେ । ସେ ଜଣେ ଉଦାର ଓ ଦେଶପ୍ରେମୀ ଥିଲେ । ଗାନ୍ଧିଜୀଙ୍କର ସ୍ୱାଧୀନତା ସଂଗ୍ରାମର ସେ ଜଣେ ବିଶିଷ୍ଟ ଆଞ୍ଚଳିକ ସୈନିକ ଥିଲେ । ଲବଣ ସତ୍ୟାଗ୍ରହରେ ଯୋଗ ଦେଇ ସେ କେତେ ସମୟ କାରାବରଣ କରି ନିଜର ବଂଶ ଗ୍ରାମ ତଥା ଅଞ୍ଚଳର ସୁନାମ ରକ୍ଷା କରିଥିଲେ । ୧୯୪୨ "ଭାରତ ଛାଡ଼ ଆନ୍ଦୋଳନ ବେଳେ ଏହି ଗ୍ରାମର ଯୁବକମାନଙ୍କୁ ସେ ସଂଗଠିତ କରାଇ ସେମାନଙ୍କ ମନରେ ଦେଶମାତୃକାର ମୁକ୍ତି ଭାବ ଜାଗ୍ରତ

କରାଇ ଥିଲେ ଏବଂ ଏରସମା ଥାନା ଗୃହଦାହ ନିମିତ୍ତ ଆବଶ୍ୟକୀୟ ଉପକରଣମାନ ଯୋଗାଇ ଦେଇ ସେଠାକୁ ପ୍ରେରଣ କରିଥିଲେ । ନିଜେ ବୃଦ୍ଧ ଓ ଅକର୍ମଣ୍ୟ ଥିବାରୁ ପ୍ରବଳ ଦେଶପ୍ରେମ ବାସନା ଥିବା ସତ୍ତ୍ୱେ ନିଜେ ଏ ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ ।

ଭାରତ ଛାଡ଼ ଆନ୍ଦୋଳନ ପରେ ପରେ ଯେଉଁସବୁ ଦମନ ମୂଳକ ସରକାରୀ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା; ସେଥିରୁ ଉପରୋକ୍ତ ଶୀକାଗରୁ ଏଥିର ଗ୍ରାମବାସୀ ମଧ୍ୟ ବଞ୍ଚିତ ନ ଥିଲେ । ଏରସମା ଥାନାପୋଡ଼ି ଅପରାଧରେ ଏ ଅଞ୍ଚଳର ତତ୍କାଳୀନ ଯୁବକର୍ମୀ ଶ୍ରୀ ଗୌରିଶ୍ୟାମ ନାୟକଙ୍କ ସମେତ ବହୁବ୍ୟକ୍ତି ଦୀର୍ଘ ଜୀବନ କାରାବରଣ କରି ଥିଲେ ଓ ବହୁ ଗ୍ରାମବାସୀ "ସମୂହ ଜୋରିମାନା" ଦଣ୍ଡରେ ଦଣ୍ଡିତ ହୋଇଥିଲେ । ଏଥିରେ କୃଷ୍ଣଚନ୍ଦ୍ର ପୁରର ଆନ୍ଦୋଳନ ସଂପୃକ୍ତ ଯୁବକମାନଙ୍କ ବିରୁଦ୍ଧରେ ଗୁରୁତର ସରକାରୀ ଅଭିଯୋଗ ଥିଲା । ମହାପାତ୍ର ପରିବାରର ଅନ୍ୟତମ ବିଶିଷ୍ଟ ବ୍ୟକ୍ତି ଶ୍ରୀ ଈଶ୍ୱର ମହାପାତ୍ର, ଇଉନିୟନ ପଞ୍ଚାୟତର ତତ୍କାଳୀନ ପ୍ରେସିଡେଣ୍ଟ ପଦରେ ଅଧିଷ୍ଠିତ ଥାଇ ଆଇନ୍ କୌଶଳ ଦ୍ୱାରା ଏମାନଙ୍କୁ ନିରପରାଧ ପ୍ରମାଣିତ କରାଇ ଅପରାଧ ମୁକ୍ତ କରାଇ ଥିଲେ ।

ମହାପାତ୍ର ପରିବାରର ଅନ୍ୟ ଏକ ଗୌରବର ବିଷୟ ଏଠାରେ ଉଲ୍ଲେଖ ଯୋଗ୍ୟ । ଶ୍ରୀ କପିଳ ମହାପାତ୍ର ନିଜର ପୁତ୍ର-ମାନଙ୍କୁ ଉଚ୍ଚ ଶିକ୍ଷା ଦେବା ନିମିତ୍ତ କଟକ ସହରକୁ ପ୍ରେରଣ କରିଥିଲେ । କାରଣ ସେ ସମୟରେ ମଫସଲ ଅଞ୍ଚଳରେ ଉଚ୍ଚ ଶିକ୍ଷା ପାଇଁ କୌଣସି ବ୍ୟବସ୍ଥା ନଥିଲା । ଶ୍ରୀ ବାଞ୍ଛାନିଧି ମହାପାତ୍ର

ଶ୍ରୀ ବାଳକୃଷ୍ଣ ମହାପାତ୍ର କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲା ବେଳେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏମାନଙ୍କର ସହପାଠୀ ଥିଲେ । ମୁଁ ଏ ଉଭୟଙ୍କ ଠାରୁ ନେତାଜୀଙ୍କର ପିତା ଶ୍ରୀ ଜାନକୀ ବୋଷଙ୍କ ପରିବାର ସମ୍ପର୍କରେ କେତେକ ବିବରଣୀ ଅବଗତ ହୋଇଛି ।

ପ୍ରାୟ ୧୯୧୬-୧୭ ଖ୍ରୀ: ଅ: ରେ ଶ୍ରୀ ବାଞ୍ଛାନିଧି ପ୍ରମୁଖ କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିଲେ । ସେତେବେଳେ ଶ୍ରୀ ଜାନକୀ ବୋଷ କଟକର ଏକ ଖ୍ୟାତନାମା ଓକିଲ ଥିଲେ । ଶ୍ରୀ କପିଳ ମହାପାତ୍ର ତତ୍‌କାଳୀନ ସମାଜରେ ଏକ ଧନିକ ଜମିଦାର ଶ୍ରେଣୀୟ ବ୍ୟକ୍ତି ଥିବାରୁ, ଏହାଙ୍କର ଅନେକ ମୋକଦ୍ଦମା କଟକର ବିଚାରାଳୟମାନଙ୍କରେ ଚାଲୁଥିଲା । ଏହି ସମୟରେ ଜିଲ୍ଲା ଜଜ୍, ପୋଲିସ ସୁପରିଣ୍ଟେଣ୍ଡେଣ୍ଟ, ଶିକ୍ଷା ବିଭାଗର ପରିଦର୍ଶକ ପ୍ରଭୃତି ଜିଲ୍ଲା ତଥା ଡିବିଜନ ସ୍ତରର ସରକାରୀ କର୍ମଚାରୀ ରୂପେ ଗୋରା ସାହେବମାନେ ନିଯୁକ୍ତ ଥିଲେ । ଓକିଲ ଶ୍ରୀ ଜାନକୀ ବୋଷ, ଶ୍ରୀ କପିଳ ମହାପାତ୍ରଙ୍କର ଯାବତୀୟ ମାଲି-ମୋକଦ୍ଦମାରେ ଓକିଲାତି କରୁଥିଲେ । ଏଣୁ ଉଭୟଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । ଶ୍ରୀ ବୋଷଙ୍କର ଛଅଗୋଟି ପୁତ୍ର । ଏମାନେ ବେଶ୍ ବିଳାସ ବ୍ୟସନରେ ଚଳୁଥିଲେ । ଜନୈକ ଯୋଗ୍ୟ ଶିକ୍ଷକ ତାହାଙ୍କର ପିଲାମାନଙ୍କୁ ଶିକ୍ଷା ଦେବା ନିମିତ୍ତ ଗୃହ ଶିକ୍ଷକ ରୂପେ ନିଯୁକ୍ତ ଥିଲେ । ଶ୍ରୀ କପିଳ ମହାପାତ୍ରଙ୍କର ଉପରୋକ୍ତ ଦୁଇ ପୁତ୍ର ପ୍ରତ୍ୟହ ସକାଳ ବେଳା ଜାନକୀ ବାବୁଙ୍କ ଘରକୁ ଯାଇ ତାଙ୍କ ପୁତ୍ର ଶ୍ରୀ ସୁଭାଷ ଚନ୍ଦ୍ରଙ୍କ ସହିତ ଗୃହ ଶିକ୍ଷକଙ୍କ ନିକଟରେ ଅଧ୍ୟୟନ କରିବାର ସୁଯୋଗ ପାଉଥିଲେ ।

ଥରେ ଗ୍ରୀଷ୍ମାବକାଶ ପରେ ସ୍କୁଲ ଖୋଲିବା ଦିନ ଶ୍ରୀ ବାଞ୍ଛାନିଧି ବିଦ୍ୟାଳୟର ଶ୍ରେଣୀ ଗୃହରେ ଉପସ୍ଥିତ ହୋଇ ଶ୍ରୀ ସୁଭାଷଙ୍କ ଗଳାରେ ତିନିସର ତୁଳସୀମାଳ ଦେଖିବାକୁ ପାଇଲେ । ସେ ଈଷତ୍ ହସି ସୁଭାଷଙ୍କୁ ପଚାରିଲେ, "କି ହୋ ସୁଭାଷ ! କ'ଣ ବାବାଜୀ ବେଶ ସାଜିଲଣି ?" ସୁଭାଷ ମୃଦୁ ହସି ଉତ୍ତର ଦେଲେ, "ଶ୍ରୀ ଗୁରୁଦେବ କୃପା ପୂର୍ବକ ମୋତେ ଏହା ଧାରଣ କରାଇ ଦେଇ ଅଛନ୍ତି ।" ସାଥୀ ବାଞ୍ଛାନିଧିଙ୍କର ଏ ସମ୍ପର୍କରେ ସବିଶେଷ ବିବରଣୀ ଜାଣିବାର ଆଗ୍ରହ ଲକ୍ଷ୍ୟ କରି ସୁଭାଷ ତାହାଙ୍କର ଗୁରୁ ଆଶ୍ରିତ ହେବା ପ୍ରସଙ୍ଗ ନିମ୍ନୋକ୍ତ ଭାବେ ପ୍ରକାଶ କରିଥିବା କଥା ଏଠାରେ ଉଲ୍ଲେଖ କରାଯାଉଅଛି ।

ସେ କହିଥିଲେ, "ଗୁରୁଦେବ ଶ୍ରୀ ରାମ ଦାସ, ଭାରତ ପ୍ରସିଦ୍ଧ ସାଧୁ ଶ୍ରୀ ରାଧାରମଣ ଚରଣ ଦାସଙ୍କ ଶିଷ୍ୟ ଅଟନ୍ତି । ଶ୍ରୀ ରାଧାରମଣ ବଡ ବାବାଜୀ ନାମରେ ସମଗ୍ର ଦେଶରେ ପରିଚିତ । ସେ ଯୁଗାବତାରୀ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ନାମ ପ୍ରେମ ଧର୍ମ ପ୍ରଚାର କାର୍ଯ୍ୟରେ ଦେଶର ପୁରପଲ୍ଲୀ ଭ୍ରମଣ କରନ୍ତି । ଏହି ଗ୍ରୀଷ୍ମାବକାଶ ମଧ୍ୟରେ ସ୍ନାନ ଯାତ୍ରା ଉପଲକ୍ଷେ ଶ୍ରୀ ରାମ ଦାସ ଶ୍ରୀଧାମ ପୁରୀକୁ ଆସିଥିଲେ । ଅବଶ୍ୟ ପୂର୍ବରୁ ମୁଁ ପିତାଙ୍କ ସହିତ ତାଙ୍କୁ ଥରେ ମାତ୍ର ଦର୍ଶନ କରିବାର ସୌଭାଗ୍ୟ ପାଇଥିଲି । ଅବକାଶ ଅବସରରେ ଆମେ ସପରିବାର ଶ୍ରୀ ଜଗନ୍ନାଥଙ୍କ ସ୍ନାନ ଯାତ୍ରା ଦର୍ଶନ ଅଭିପ୍ରାୟରେ ଶ୍ରୀକ୍ଷେତ୍ର ଯାଇଥିଲୁ । ସେଠାରେ ମୋର ପିତା ଶ୍ରୀ ରାଧାରମଣଙ୍କ ଶିଷ୍ୟ ଶ୍ରୀ ରାମ ଦାସଙ୍କ ଦର୍ଶନ ପାଇଁ ତାଙ୍କର ଝାଞ୍ଜପିଠା ଆଶ୍ରମକୁ ଆମ୍ଭମାନଙ୍କୁ ନେଇ ଯାଇଥିଲେ । ସେଠାରେ ମୁଁ ଗୁରୁ ଶ୍ରୀ ରାମ ଦାସଙ୍କର ସୌମ୍ୟ, ଶାନ୍ତ,

ଦେବୋପମ ଶ୍ରୀମୂର୍ତ୍ତି ଦର୍ଶନ କରି ସ୍ୱତଃ ତାଙ୍କ ପ୍ରତି ଭକ୍ତି ପରାୟଣ ହୋଇ ପଡ଼ିଥିଲି ଏବଂ ତାହାଙ୍କ ଠାରୁ ଦୀକ୍ଷା ଗ୍ରହଣ କରିବାର ଅଭିଳାଷ ପିତାଙ୍କୁ ଜଣାଇଥିଲି । ପରଦିନ ସେ ମହା-ପୁରୁଷ ମୋତେ ଦୀକ୍ଷା ପ୍ରଦାନ ପୂର୍ବକ ଶିଷ୍ୟ ରୂପେ ଗ୍ରହଣ କରି ମୋର ଜୀବନ ସାର୍ଥକ କରି ଅଛନ୍ତି ।"

ସୁଭାଷଙ୍କର ଉପରୋକ୍ତ ଭଗବତ୍ ଅନୁରାଗ-ପୂର୍ଣ୍ଣ ସରଳ କଥା ଶୁଣି ଶ୍ରୀ ବାଞ୍ଛାନିଧି ତାଙ୍କୁ ପ୍ରଶ୍ନ କଲେ, "ତୁମେ କେଉଁ ସୂକ୍ଷ୍ମ ଉଦ୍ଦେଶ୍ୟରେ ମନ୍ତ୍ରଦୀକ୍ଷା ଗ୍ରହଣ କରିଅଛ ?" ସୁଭାଷ କହିଲେ, "ଶ୍ରୀ ଗୁରୁଦେବ ଠିକ୍ ଏହି ପ୍ରଶ୍ନଟି ଦୀକ୍ଷା ଦାନ ଦିବସର ପର ଦିନ ପୂର୍ବାହ୍ଣରେ ମୋତେ ପଚାରିଥିଲେ । ମୁଁ ଶ୍ରୀ ଗୁରୁଦେବଙ୍କ ଏହି ପ୍ରଶ୍ନର ଉତ୍ତର ଏକ ପ୍ରତି ପ୍ରଶ୍ନ କରିଆରେ ଏହିପରି ଜଣାଇଥିଲି, "ଆଜ୍ଞା, ଆପଣଙ୍କ ପ୍ରଦତ୍ତ ମନ୍ତ୍ରର ବଳିଷ୍ଠ ଶକ୍ତି ଲାଭ କରି ମୁଁ କ'ଣ ଦେଶ ଓ ଦଶର ସେବା କରି ପାରିବ ନାହିଁ ?" ଶ୍ରୀ ଗୁରୁଦେବ ଏ ପ୍ରକାର ପ୍ରତି ପ୍ରଶ୍ନ ନିହିତ ମୋର ଆନ୍ତରିକ ଉଦ୍ଦେଶ୍ୟ ଜ୍ଞାତ ହୋଇ ମୋତେ ପୁନର୍ବାର ପ୍ରଶ୍ନ କରିଥିଲେ, "ସେବା ମାନେ କ'ଣ ଜାଣ ?" ମୋତେ ସଙ୍କୁଚିତ ଭାବେ ନୀରବ ରହିବା ଦେଖି, ଶ୍ରୀ ଗୁରୁଦେବ କହିଲେ, "ସେବା ମାନେ ଅପରକୁ ସୁଖ ଦେବା । ତୁମର ଗୃହ ଜୀବନ, ତୁମେ ଭଲ ପାଠ ପଢ଼ିଲେ ମୁଁ ଓ ତୁମର ଆତ୍ମୀୟମାନେ ସୁଖୀ ହେବୁ । ଯଦି ତୁମେ ଦେଶ ଓ ଦଶର ସେବା କରିବାକୁ ଇଚ୍ଛୁକ, ତେବେ ପଢ଼ା ଶେଷ କରି ଆଜନ୍ମ ବ୍ରହ୍ମଚର୍ଯ୍ୟ ରହିଲେ ତୁମର ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ।"

ପ୍ରାୟ ୧୯୪୯ ଖ୍ରୀଷ୍ଟାବ୍ଦରେ ଶ୍ରୀ ମହାପାତ୍ରେ ସୁଭାଷଙ୍କ ବାଲ୍ୟ ଜୀବନର ଉଲ୍ଲିଖିତ ଚମତ୍କାରିତାପୂର୍ଣ୍ଣ ପ୍ରସଙ୍ଗଟି ମୋତେ ଶୁଣାଇ ଥିଲେ । ଏ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ, ସେ କହିଲେ, ସୁଭାଷ, ନିଜର ଗୁରୁ ଆଜ୍ଞା ନିଷ୍ଠାର ସହିତ ପାଳନ କରିଥିବା ଫଳରେ ହିଁ, ଭାରତ ମୁକ୍ତିର ପଥ ସୁଗମ ହୋଇ ପାରିଲା । ଗାନ୍ଧିଜୀଙ୍କର ଅହିଂସା ଓ ସୁଭାଷଙ୍କର ନ୍ୟାୟ ଯୁଦ୍ଧ ପ୍ରବୃତ୍ତି, ଏହି ଦୁଇ ମାର୍ଗ ଭାରତୀୟ ଆତ୍ମାର ପ୍ରତୀକ ।

ସମୟ ଚକ୍ରର ଆବର୍ତ୍ତନରେ, ଭାରତୀୟ ଜୀବନରେ ଗାନ୍ଧିଜୀ, ନେତାଜୀ ପ୍ରମୁଖ ଜନ ନାୟକମାନଙ୍କର ତ୍ୟାଗର ଆଦର୍ଶ ପ୍ରତିଫଳିତ ହେଲା । ଏହା ଫଳରେ ୧୯୪୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୫ ତାରିଖରେ ଭାରତ ବିଦେଶୀ ଶାସନ କବଳରୁ ମୁକ୍ତ ଲାଭ କଲା । ଏଣିକି ଭାରତରେ ଏକ ନବଯୁଗର ସୂତ୍ରପାତ ହେଲା । ରାଜା ରାଜୁଡ଼ା, ଜମିଦାରୀ, ମଲ୍ଦମୀ ପ୍ରଭୃତି ଯାବତୀୟ ମଧ୍ୟ-ସତ୍ତ୍ୱର ବିଲୋପ ସାଧିତ ହେଲା । କ୍ରମଶଃ ଶିକ୍ଷା, ବିଜ୍ଞାନ ଓ ଧର୍ମ-ନିରପେକ୍ଷ ଗାନ୍ଧିବାଦୀ ସଂସ୍କୃତିର କ୍ରମବିକାଶ ଘଟିଲା ।

ମୁଁ ଯେଉଁ ସମୟରେ ଏହି ଗ୍ରାମର ଇତିହାସ ବର୍ଣ୍ଣନା କରୁଛି, ସେତେବେଳକୁ ଏହି ଗ୍ରାମର ପରିବାର ସଂଖ୍ୟା ମୋଟ ୭୪ ଥିଲା । ଏମାନଙ୍କ ମଧ୍ୟରୁ ବ୍ରାହ୍ମଣ ବ୍ୟତୀତ ଖଣ୍ଡାୟତ ସମ୍ପ୍ର-ଦାୟର ୪୫ଟି ପରିବାର ଓ ଅନ୍ୟମାନେ ଗୁଡ଼ିଆ, ବାଉରୀ, ଧୋବା, ବୈଷ୍ଣବ, ହାଡ଼ି ପ୍ରଭୃତି ସମ୍ପ୍ରଦାୟର ଲୋକ ଥିଲେ ।

## ସାଧାରଣ ଶିକ୍ଷା

୧୯୦୪ ଖ୍ରୀଷ୍ଟାବ୍ଦରେ ଗ୍ରାମର ନିମ୍ନ ପ୍ରାଥମିକ ବିଦ୍ୟାଳୟଟି ସ୍ଥାପିତ ହୋଇଥିଲା । ଗ୍ରାମର ଶତକଡ଼ା ୮୦ ବ୍ୟକ୍ତି ସାକ୍ଷର ଅଛନ୍ତି । ବର୍ତ୍ତମାନ ଗ୍ରାମରେ ୧୦ ଜଣ ବିଶ୍ୱବିଦ୍ୟାଳୟ ଉପାଧିଧାରୀ ବ୍ୟକ୍ତି ଓ ଉଚ୍ଚ ମାଧ୍ୟମିକ ଶିକ୍ଷୋତ୍ତୀର୍ଣ୍ଣ ୪୦ ଜଣ ଯୁବକଯୁବତୀ ଅଛନ୍ତି । ଗ୍ରାମର ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରୀ ଶୁକଦେବ ମହାପାତ୍ର ଜିଲ୍ଲା ଜଜ୍ ପଦରୁ ଅବସର ଗ୍ରହଣ କରି ଅଛନ୍ତି । ଏ ମହାଶୟ ମହାପାତ୍ର ବଂଶର ଅନ୍ୟତମ ଖ୍ୟାତନାମା ବ୍ୟକ୍ତି ଈଶ୍ୱର ମହାପାତ୍ରଙ୍କ ଜ୍ୟେଷ୍ଠ ପୁତ୍ର ଅଟନ୍ତି । ଶ୍ରୀ ଶୁକଦେବ ସରଳ ଓ ନିରାଡ଼ମ୍ବର ଜୀବନଯାପନ କରନ୍ତି । ଏହାଙ୍କର ନିଷ୍କଳଙ୍କ କର୍ମ ଜୀବନ ଓ ସାଧୁ ମୂଳକ ଆଚରଣ ଏହାଙ୍କ ଜୀବନର ବୈଶିଷ୍ଟ୍ୟ । ଜଣେ ପଞ୍ଚାୟତି ସୁବିଚାରକ ଭାବରେ ଏହାଙ୍କର ପିତା ଶ୍ରୀ ଈଶ୍ୱର ମହାପାତ୍ରଙ୍କର ବେଶ୍ ସୁଖ୍ୟାତି ଥିଲା । ଇଂରେଜ ଶାସନ କାଳରେ ଏ ମହାଶୟ ୟୁନିୟନ ପଞ୍ଚାୟତର ପ୍ରେସିଡେଣ୍ଟ ହିସାବରେ ଜଣେ ସମ୍ମାନିତ ବ୍ୟକ୍ତି ମଧ୍ୟ ଥିଲେ । ଗ୍ରାମର ଅନ୍ୟ ଉଚ୍ଚ ଶିକ୍ଷିତମାନଙ୍କ ମଧ୍ୟରେ କେତେକ ଡାକ୍ତର, ଶିକ୍ଷକ, ପୋଲିସ କର୍ମଚାରୀ ପ୍ରଭୃତି ବିଭିନ୍ନ ସରକାରୀ ଦାୟିତ୍ୱରେ ନିଯୁକ୍ତ ଅଛନ୍ତି ।

ଶ୍ରୀ ଶୁକଦେବଙ୍କର କନିଷ୍ଠ ଭ୍ରାତା ଶ୍ରୀ ନାରଦ ମହାପାତ୍ର ଜ୍ୟେଷ୍ଠ ସହୋଦରଙ୍କ ପରି ଅତ୍ୟନ୍ତ ସରଳ ପ୍ରାଣ ଓ ଦୟାଳୁ ବ୍ୟକ୍ତି ଅଟନ୍ତି । ଅନ୍ନକଷ୍ଟ, ଋଣ ତଥା ଆତୁର ପ୍ରଭୃତି ବିପନ୍ନମାନଙ୍କୁ ଅଯାଚିତ ସାହାଯ୍ୟ କରିବାରେ ଏ ମହାଶୟ ସର୍ବଦା ମୁକ୍ତ ହସ୍ତ । ଗ୍ରାମର ଆବାଳ ବୃଦ୍ଧ ବନିତା ଏହାଙ୍କୁ ଆନ୍ତରିକ ସମ୍ମାନ ଓ ଶ୍ରଦ୍ଧା

କରନ୍ତି । ପୂର୍ବୋକ୍ତ ଦେଶପ୍ରେମୀ ଶ୍ରୀ ବ୍ରଜବନ୍ଧୁଙ୍କର ପୁତ୍ର ଶ୍ରୀ ତେଗଲକ ଚନ୍ଦ୍ର, ଏ ପରିବାରର ଅନ୍ୟତମ ଆଞ୍ଚଳିକ ଖ୍ୟାତ-ନାମା ବ୍ୟକ୍ତି । ଏ ଜଣେ ବିଶେଷ ଶିଷ୍ଟାଚାର ଓ ମର୍ଯ୍ୟାଦା ସମ୍ପନ୍ନ ବ୍ୟକ୍ତି । ଦୁଃସ୍ଥ-ସାହାଯ୍ୟ ମନୋବୃତ୍ତି ଓ ମାନସିକ ପ୍ରସନ୍ନତା ଏହାଙ୍କର ସ୍ୱଭାବ ସୁଲଭ ଲକ୍ଷଣ ଅଟେ ।

## ଜୀବିକା—

ଗ୍ରାମ ଅଧିବାସୀମାନଙ୍କର ମୁଖ୍ୟ ଜୀବିକା କୃଷି । ଏହି ଗ୍ରାମର କୃଷିକ୍ଷେତ୍ର ଅଣଜଳସେଚିତ ଅଞ୍ଚଳରେ ଥିବାରୁ; ଖରିଫ୍ ଋତୁରେ କେବଳ ଧାନ ଚାଷ ବ୍ୟତୀତ କୃଷକମାନଙ୍କର ଅନ୍ୟ କୌଣସି ଫସଲ ଉତ୍ପାଦନର ସୁବିଧା ସୁଯୋଗ ନାହିଁ । ବ୍ରାହ୍ମଣ ପରିବାରମାନଙ୍କ ମଧ୍ୟରୁ, ମୁଷ୍ଟିମେୟ ବ୍ୟକ୍ତି ନିଜର କୌଳିକ, ପୌରୋହିତ୍ୟ କାର୍ଯ୍ୟ ସାମୟିକ ଭାବେ କରିଥାନ୍ତି । ଗ୍ରାମବାସୀମାନେ ନିଜର ବ୍ୟବହାରୋପଯୋଗୀ ବେଁଶ-ମଶିଣା, ଖଇଞ୍ଚ ଅନ୍ଧୁଲି ଓ ଜାଲ ପ୍ରଭୃତି ମାଛଧରା ଉପକରଣାଦି ପ୍ରସ୍ତୁତ କରିବା ବ୍ୟତୀତ ଅନ୍ୟ କୌଣସି ପ୍ରକାରର କୁଟୀର ଶିଳ୍ପ କାର୍ଯ୍ୟରେ ଅଭ୍ୟସ୍ତ ନୁହନ୍ତି । ଭୂମିହୀନ ବ୍ୟକ୍ତିମାନେ କୃଷି ଶ୍ରମିକ ମଜୁରି ଇତ୍ୟାଦି ଦ୍ୱାରା ଜୀବିକାନିର୍ବାହ କରନ୍ତି । ଅଳ୍ପ କେତେକଜଣ ବ୍ୟକ୍ତି ଦେଶର ସୁଦୂର ସହରାଞ୍ଚଳର ଶିଳ୍ପ କାରଖାନାରେ କାର୍ଯ୍ୟ କରନ୍ତି ।

## ଧର୍ମ ଓ ସାଂସ୍କୃତିକ ବ୍ୟବସ୍ଥା

"ହରିହର ମନ୍ଦିର" ମହାପାତ୍ର ବଂଶର ବ୍ୟକ୍ତିଗତ ମନ୍ଦିର ହୋଇଥିଲେ ହେଁ, ସମଗ୍ର ଗ୍ରାମବାସୀ ବ୍ୟକ୍ତିଗତ ଓ ସାମୁହିକ

ପୂଜାଉପାସନାଦି ନିର୍ବିଘ୍ନରେ ଏହି ମନ୍ଦିରରେ ସମ୍ପାଦନ କରିଥାନ୍ତି; ଏପରି କି ହରିଜନମାନେ ମଧ୍ୟ ଏଥିରୁ ବଞ୍ଚିତ ନୁହନ୍ତି । ଗ୍ରାମରେ ଦୁଇଟି ଭାଗବତ ମନ୍ଦିର ଅଛି । ଗୋଟିଏ ଠିକ୍ ଗ୍ରାମର ମଧ୍ୟସ୍ଥଳରେ ଓ ଅପରଟି ଗ୍ରାମର ପୂର୍ବ ସୀମାନ୍ତରେ । ଏହି ମନ୍ଦିରର ଦୈନିକ ସେବା ପୂଜା ଆଦି ଗ୍ରାମର ଦୁଇ ବିଭିନ୍ନ ସଂସ୍ଥା ଦ୍ୱାରା ପରିଚାଳିତ ହୁଏ । ମନ୍ଦିରମାନଙ୍କର ସେବା ପୂଜା ପରିଚାଳନା ପାଇଁ କେତେକ କୃଷି ଭୂମି ମଧ୍ୟ ଖଞ୍ଜା ଯାଇଛି । ଶରତ ଋତୁର ଇନ୍ଦ୍ରପୂର୍ଣ୍ଣିମା ଓ ବସନ୍ତ ଋତୁର ଦୋଳପୂର୍ଣ୍ଣିମା ଏ ଦୁଇଟି ଗ୍ରାମବାସୀମାନଙ୍କର ମୁଖ୍ୟ ସାମୁହିକ ପର୍ବ ଅଟେ । ଇନ୍ଦ୍ର ପୂର୍ଣ୍ଣିମାରେ "ବ୍ୟାସ ଜୟନ୍ତୀ" ପାଳିତ ହୋଇ ଯଥାରୀତି ପୂଜା ପାଠ ହୁଏ । ଦୋଳପୂର୍ଣ୍ଣିମାରେ ଦେବୀଦଣ୍ଡାର ଗ୍ରାମ ସଂଲଗ୍ନ ପ୍ରାନ୍ତରରେ ଏକ ବିରାଟ ମେଳଣ ହୁଏ । ଏହା "ଗୋଠ-ମେଳଣ" ନାମରେ ଅଭିହିତ । ଏହି "ଗୋଠ ମେଳଣ" ଏ ଅଞ୍ଚଳର ଏକ ଦର୍ଶନୀୟ ମେଳା । ଦୁଇ, ତିନି ଦିନ ଧରି ମେଳଣ ସ୍ଥାନରେ ବିଖ୍ୟାତ ଯାତ୍ରା-ଦଳମାନେ ଯାତ୍ରାଭିନୟ କରନ୍ତି । ହଜାର ହଜାର ଲୋକଙ୍କର ସମାବେଶ ହୁଏ । ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଗ୍ରାମର ସମସ୍ତ ଗୋରୁଙ୍କୁ ଏହି ପଡିଆରେ ଏକତ୍ରିତ କରି ହିନ୍ଦୁଧର୍ମ ବିଧାନ ଅନୁଯାୟୀ ଗୋଜାତିର ପୂଜା କରାଯାଏ । ଏଣୁ ଏ ପର୍ବଟି "ଗୋଠ ମେଳଣ" ନାମରେ ଖ୍ୟାତ । ଗ୍ରାମର ସମୀପବର୍ତ୍ତୀ ଅନ୍ୟ ଗ୍ରାମର ଗୋପାଳ ଜାତିର ଲୋକେ ଏହି ଦିନ ଏଠାରେ ଗୀତ ଗାଇ "ଲୌଡ଼ି ଖେଳ" କରନ୍ତି । ଏହା ଉତ୍କଳର ଏକ ପାରମ୍ପରିକ ସଂସ୍କୃତି ଅଟେ । ଗୋଠ ମେଳଣର ପରିଚାଳନା ଖର୍ଚ୍ଚ ପାଇଁ ମଧ୍ୟ କେତେକ ଜମି ଖଞ୍ଜା ଅଛି । ଗ୍ରାମର ଏହି ସବୁ ଧର୍ମଗତ ଓ ସାଂସ୍କୃତିକ କାର୍ଯ୍ୟହିଁ ଗ୍ରାମବାସୀମାନଙ୍କ ମଧ୍ୟରେ ସଂହତି ରକ୍ଷା କରିବା ଓ

ଗ୍ରାମର ସର୍ବାଙ୍ଗୀନ ଉନ୍ନତି ବିଧାନର ପ୍ରଧାନ ସହାୟକ ବୋଲି ମନେ କରାଯାଏ ।

## ପ୍ରାଚୀନ କୀର୍ତ୍ତି

ଗ୍ରାମଟିରେ ଉଲ୍ଲେଖଯୋଗ୍ୟ କୌଣସି ପ୍ରାଚୀନ କୀର୍ତ୍ତି ନଥିଲେ ହେଁ ହରିହର ମନ୍ଦିର ଏବଂ ଗ୍ରାମର ଦକ୍ଷିଣ-ପଶ୍ଚିମ ସୀମାନ୍ତବର୍ତ୍ତୀ ଚନ୍ଦନ ପୁଷ୍କରିଣୀ ଗ୍ରାମର ଗୌରବ ବର୍ଦ୍ଧକ-କୀର୍ତ୍ତି ଅଟେ । ପୁଷ୍କରିଣୀର ଆୟତନ ଦୁଇ ଏକର ପରିମିତ ଅଟେ । ଏହାର ମଧ୍ୟସ୍ଥଳରେ ଠାକୁରଙ୍କ ଚନ୍ଦନଯାତ୍ରା ନିମିତ୍ତ ଏକ ମଣ୍ଡପ ଥିଲା । ବର୍ତ୍ତମାନ ଏହାର ଭଗ୍ନାବଶେଷ ରହିଅଛି । ଗ୍ରାମର ପଶ୍ଚିମ ସୀମାରେ ଏବେ ସରକାରଙ୍କ ଦ୍ୱାରା ଏକ ମଧ୍ୟମ ଧରଣର ପୁଷ୍କରିଣୀ ଖନନ କରାଯାଇଅଛି । ସରକାରଙ୍କର ଜଳସେଚନ ବିଭାଗ ଦ୍ୱାରା ଉକ୍ତ ପୁଷ୍କରିଣୀ ନିକଟରେ ଏକ ଉତ୍ସକୂପ ଖୋଳା ଯାଇଛି । ବର୍ତ୍ତମାନ ସୁଦ୍ଧା କୃଷି ଜମିମାନଙ୍କରେ ଏହି ଉତ୍ସକୂପର ଜଳ ବ୍ୟବହୃତ ନ ହୋଇଥିଲେ ମଧ୍ୟ ଲୋକେ ଏଥିରୁ ପାନୀୟ ଜଳ ବ୍ୟବହାର କରୁଛନ୍ତି । ଏହା ବ୍ୟତୀତ ଗ୍ରାମର ମଧ୍ୟମ ସ୍ଥଳୀରେ ପାନୀୟ ଜଳ ଯୋଗାଇବା ପାଇଁ ଏକ ନଳକୂପ ମଧ୍ୟ ବସାଯାଇଛି ।

## ଭୌଗୋଳିକ ଅବସ୍ଥିତି

ବଙ୍ଗୋପସାଗରର ପ୍ରାୟ ୧୨ କି.ମି. ପଶ୍ଚିମକୁ ଗ୍ରାମଟି ଅବସ୍ଥିତ । ଗ୍ରାମଟି ଓଡ଼ିଶାର ନିମ୍ନାଞ୍ଚଳବର୍ତ୍ତୀ ହେଲେ ମଧ୍ୟ, ଏହାର ଅବସ୍ଥିତି ଏପରି ଯେ, ପ୍ରବଳ ଧରଣର ଝଡ଼ ବର୍ଷାରେ କିମ୍ବା ସାମୁଦ୍ରିକ ଲୁଣି ଜଳର ପ୍ଲାବନରେ ଗ୍ରାମର କୃଷି କ୍ଷେତ୍ର ପ୍ଲାବିତ ହୁଏ ନାହିଁ ।

## ଚତୁଃସୀମା

ଉତ୍ତରରେ କୋଠି ଗ୍ରାମ, ପୂର୍ବରେ ସିହା, ପଶ୍ଚିମରେ ଝାଡେଶ୍ୱର ଥାନାର ଘାଁ ବେଡ଼ୁଆଁ ଓ ଦକ୍ଷିଣରେ ଅଟିମଟି ଗ୍ରାମମାନ ପ୍ରାୟ ୨୫୦ ମିଟର ଦୂରତ୍ୱରେ ଅବସ୍ଥିତ ।

## ରାଜନୈତିକ ଅବସ୍ଥିତି

ଇଂରେଜ ଶାସନ କାଳରେ ଏହି ଗ୍ରାମ ଏରସମା ଥାନାର ୨ ନମ୍ବର ୟୁନିଅନ ଅନ୍ତର୍ଗତ ଥିଲା । ସ୍ୱାଧୀନତା ପରେ ଏହି ଗ୍ରାମ ଏରସମା ପଞ୍ଚାୟତ ସମିତି ଅନ୍ତର୍ଗତ "କୃଷ୍ଣଚନ୍ଦ୍ରପୁର" ଗ୍ରାମପଞ୍ଚାୟତର ଶୀର୍ଷ ଗ୍ରାମ ଅଟେ । ବର୍ତ୍ତମାନ ଗ୍ରାମର ରେଭିନ୍ୟୁ ନମ୍ବର ୫ ଅଟେ ।

## ଗମନାଗମନ ପଥ

ଗ୍ରାମର ଉତ୍ତର ସୀମାନ୍ତକୁ ପ୍ରାୟ ୫୦୦ ମିଟର ଦୂରରେ କଟକ-ଏରସମା ପକ୍କା ସଡ଼କ ଅବସ୍ଥିତ । ତେଣୁ ବାହାର ସହରାଞ୍ଚଳମାନଙ୍କୁ ଯାତାୟତ ପାଇଁ ଗ୍ରାମବାସୀମାନଙ୍କ ପକ୍ଷେ ବିଶେଷ ସୁବିଧାଜନକ । ମଫସଲର ଅନ୍ୟାନ୍ୟ ଆଭ୍ୟନ୍ତରୀଣ ଅଞ୍ଚଳକୁ ଯାତାୟତ ପାଇଁ ଆଜକାଲି ପଞ୍ଚାୟତ ରାସ୍ତାମାନ ରହିଛି । ଗ୍ରାମର ଦକ୍ଷିଣକୁ ୫ କି:ମି: ଦୂରବର୍ତ୍ତୀ ସାଉଁଳିଆ ନଦୀ ବ୍ୟତୀତ ଗମନାଗମନ ପାଇଁ ଅନ୍ୟ କୌଣସି ପ୍ରତିବନ୍ଧକ ନାହିଁ । କଟକ-ପାରାଦ୍ୱୀପ ରେଲପଥ ଏହି ଗ୍ରାମର ଉତ୍ତର ଦିଗକୁ ପ୍ରାୟ ୭ କି·ମି· ବ୍ୟବଧାନରେ ଅବସ୍ଥିତ ।

# ପରିଶିଷ୍ଟ

କୃଷ୍ଣଚନ୍ଦ୍ରପୁର ଗ୍ରାମର ଏହି ଯେଉଁ ଇତିହାସ ବର୍ଣ୍ଣିତ ହେଲା, ସେଥିରୁ ଇଂରେଜ ଶାସନ କାଳରୁ ସ୍ୱାଧୀନ ଭାରତ ଐତିହାସିକ ବିବରଣୀର କେତେକ ସ୍ଥୂଳ ଦିଗ୍‌ଦର୍ଶନ ମିଳେ । ଭାରତୀୟ ଗ୍ରାମ ଗୁଡ଼ିକ ମହାନ୍ ଭାରତ ଇତିହାସର ଏକ ଏକ ଅନୁଚ୍ଛେଦ ଏବଂ ଶ୍ରେଷ୍ଠ ବଡ଼ ସହର ଗୁଡ଼ିକ ଏହାର ବିଷୟାନ୍ତର ପରିଚ୍ଛେଦ ସ୍ୱରୂପ ।

ଯଦି କୌଣସି ବ୍ୟକ୍ତି ଭାରତ ବର୍ଷର ବିରାଟ ଇତିହାସ ଗ୍ରନ୍ଥ ପାଠ ନକରି ଭାରତର ପ୍ରତ୍ୟେକ ଜନପଦ, ସହର, ନଗର, ନଦ, ନଦୀ, ଗିରି, ଅରଣ୍ୟାଦି, ପଦବ୍ରଜରେ ଭ୍ରମଣ କରି ପରି-ଦର୍ଶନ କରିବାର ସାମର୍ଥ୍ୟ ଲାଭ କରନ୍ତି; ତେବେ ତାଙ୍କୁ ସହସ୍ରାଧିକ ବର୍ଷର ଭାରତୀୟ ଇତିବୃତ୍ତି ବିଷୟକ ଜ୍ଞାନାର୍ଜନରେ କୌଣସି ଅସୁବିଧା ହୁଅନ୍ତା ନାହିଁ ।

ଏ ଦେଶ ମୁନି ଋଷିମାନଙ୍କର ଦେଶ । ଏ ଭୂମି ଆର୍ଯ୍ୟ ତପସ୍ୱୀର ସାଧନା ପୂତ ଭୂମି । ଏହାର ପ୍ରତ୍ୟେକ ଧୂଳିକଣା ମହାନ୍ ଭାରତୀୟ ଆଧ୍ୟାତ୍ମ ବିଜ୍ଞାନର ଏକ ଏକ ଆଣବିକ ଚୈତନ୍ୟ ସତ୍ତା । ଏହାର ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ଶାସନ ପଦ୍ଧତି ସମଗ୍ର ବିଶ୍ୱରେ ସ୍ୱତନ୍ତ୍ର । ଦେଶ ମୁକ୍ତି ପରେ ଯେଉଁ ସବୁ ରାଜନୈତିକ ଶିକ୍ଷା, ସଂସ୍କୃତିଗତ ବା ଧର୍ମଗତ ଅସ୍ଥିରତା ତଥା ଭାରତୀୟ ଧର୍ମ ନିରପେକ୍ଷତାରେ ଅନିଶ୍ଚିତତା ଆଦି ବୈଲକ୍ଷଣ ଦେଶରେ ପ୍ରକାଶ ପାଉଛି; ତାହାର ଏକମାତ୍ର କାରଣ, ଜାତୀୟତାକୁ

ଅନୁଶୀଳନ ନକରି, ବିଜାତୀୟଙ୍କ ଦ୍ୱାରା ଅନୁକରଣ । ଏ ଦେଶର ଐତିହ୍ୟ, ବିଶ୍ୱ ଇତିହାସର ଜୀବନକାଠି ସ୍ୱରୂପ । କଥା ଅଛି, ଯାହା ନାହିଁ ଭାରତେ, ତାହା ନାହିଁ ମରତେ । ଏ ପର୍ଯ୍ୟନ୍ତ ବିଭିନ୍ନ ବିଦେଶୀୟ ଐତିହାସିକମାନଙ୍କ ଦ୍ୱାରା, ଭାରତର ଯେଉଁ ଇତିହାସ ଗ୍ରନ୍ଥିତ କରି ହୋଇଛି, ତାହା ସବୁ ବାସ୍ତବାଭିମୁଖୀ ନୁହେଁ । କାରଣ ଏଥିରେ ଋଷି ଯୁଗୀୟ ସମ ଦର୍ଶନ ପଦ୍ଧତିଗତ ମହା ମାନବୀୟ ସଭ୍ୟତା, ସଂସ୍କୃତି, ସାହିତ୍ୟ, ଜ୍ଞାନ, ବିଜ୍ଞାନ ଓ ନିରପେକ୍ଷ, ନିପୀଡ଼ନ ଶାସନତାନ୍ତ୍ରିକ, ବିଶ୍ୱ କଲ୍ୟାଣକାମୀ ବିଷୟବସ୍ତୁମାନଙ୍କର ଆଭାସମାତ୍ର ସୂଚିତ ହୋଇନାହିଁ ।

ଅତୀତରେ ଭାରତୀୟ ସଭ୍ୟତା କାହାରିକୁ ଅନୁକରଣ କରିନାହିଁ; ବରଂ ଅନ୍ୟ ବହୁ ଜାତିର କେବଳ ଅନୁକରଣୀୟ ନୁହେଁ, ବହୁ ଜାତି, ବହୁ ମତବାଦୀଙ୍କର ଆତ୍ମସାତ୍‌କାରୀ, କହିବା ଅପ୍ରାସଙ୍ଗିକ ହେବନାହିଁ । ବିଶ୍ୱ ମାନବ ସମାଜରେ କେବଳ ଭାରତୀୟ ହିଁ ତାର ପୂର୍ବ ପୁରୁଷର ଐତିହ୍ୟକୁ ସମ୍ବଳ କରି ବଞ୍ଚିବାରେ ସୁଖ ଅନୁଭବ କରିଥାଏ । ନିଜ ଗୋତ୍ର ଅର୍ଥାତ୍ କୁଳାଦି ପୁରୁଷର ଉପାସନା କରେ । ପୃଥିବୀର ଅନ୍ୟ କୌଣସି ଜାତି ନୁହନ୍ତି ।

ଭାରତୀୟ ସନାତନୀ ମାନବ ଜାତିର ଧର୍ମଗ୍ରନ୍ଥ ବେଦ । ଏହା ସ୍ୱପ୍ରତିଷ୍ଠିତ । ଏଥିରେ କାହାରିକୁ ଏକ ନିର୍ଦ୍ଦିଷ୍ଟ ଧର୍ମମତ ନେଇ ଚଳିବାକୁ ବାଧ୍ୟତାମୂଳକ ଆଦେଶ କରିଯାଇ ନାହିଁ । ପରନ୍ତୁ, ଧର୍ମାଚରଣ ପାଇଁ, ପ୍ରତ୍ୟେକଙ୍କୁ ସ୍ୱାତନ୍ତ୍ର୍ୟ ପ୍ରଦାନ କରିଛି । ତେଣୁ ଏହା ଏକ ମାତ୍ର ଗଣତାନ୍ତ୍ରିକ ଧର୍ମ । ବିଶ୍ୱରେ ପ୍ରଚଳିତ ଅନ୍ୟ

ଧର୍ମ ସମୂହକୁ ବ୍ୟକ୍ତିତାନ୍ତ୍ରିକ କହିବାର ତାତ୍ପର୍ଯ୍ୟ ଏହି ଯେ, ସେହି ସବୁ ଧର୍ମ ଗ୍ରନ୍ଥରେ ପ୍ରଚାରକ ବା ପ୍ରବର୍ତ୍ତକଙ୍କ ମତାବଲମ୍ବୀ ହେବାକୁ ବାଧ୍ୟ କରାଯାଇଛି । ଯଦି ଉପରୋକ୍ତ ବିଷୟମାନଙ୍କର ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇ, ଭାରତ ଇତିହାସ ସଙ୍କଳିତ ହୋଇ ମାନବ ସମାଜରେ ପ୍ରଚାରିତ ହୋଇ ପାରନ୍ତା, ତେବେ ମାନବ ଜାତିର ସମସ୍ତ ପ୍ରକାର ସଂକୀର୍ଣ୍ଣତା ଦୂର ହୋଇ, ବିଶ୍ୱ ସାମ୍ୟ-ମୈତ୍ରୀ ଭାବ ପ୍ରତିଷ୍ଠା ଦିଗରେ ଏହା ପୂର୍ଣ୍ଣତଃ ସହାୟକ ହୁଅନ୍ତା ।

ଏହି କୃଷ୍ଣଚନ୍ଦ୍ରପୁର ଗ୍ରାମର ଇତିହାସ ଏ ଅଞ୍ଚଳରେ ପ୍ରଚଳିତ ଶ୍ରୀ ଭୁଆସୁଣୀ ଠାକୁରାଣୀଙ୍କ କିମ୍ବଦନ୍ତୀ ଉପରେ ଆଧାରିତ । ଏହି ସବୁ କିମ୍ବଦନ୍ତୀକୁ କପୋଳକଳ୍ପିତ ମନେ କରିବା ସମିଚୀନ ହେବ ନାହିଁ । ବିଶ୍ୱ ମଧ୍ୟରେ ସନାତନ ଧର୍ମ, ଏକ ମାତ୍ର ଧର୍ମ ଯାହାର ଭଗବତ ଆରାଧନା ଓ ଯଜନ ପଦ୍ଧତି "ଦେହ ଦେହୀ ଅଭିନ୍ନ" ଅର୍ଥାତ୍, ଜୀବ ଈଶ୍ୱର ଏକତ୍ୱ ଜ୍ଞାନରେ ସମାରୂଢ଼ । ମନୁଷ୍ୟ ପରି ଈଶ୍ୱର ବିଭିନ୍ନ ରୂପରେ ପୃଥିବୀରେ ଅବତରଣ କରି ସର୍ବଦା ଲୀଳାୟିତ । ଏହି ଆମ୍ଭଙ୍କ ବିଶ୍ୱାସବାଦ ହିଁ ସନାତନୀ ମାନବ ଧର୍ମର ପ୍ରାଣ । ବୃନ୍ଦାବନ ଧାମର ଗୋପାଳଜୀଉଙ୍କର ସାକ୍ଷୀଗୋପାଳ ରୂପେ ଉତ୍କଳ ଆଗମନ, କ୍ଷୀରଚୋରା ଗୋପୀନାଥ ଓ ଗଜପତି ପୁରୁଷୋତ୍ତମ ଦେବଙ୍କ ସମ୍ମାନ ରକ୍ଷା ପାଇଁ, ଶ୍ରୀ ଜଗନ୍ନାଥଙ୍କର ପାଇକ ବେଶରେ କାଞ୍ଚି ଅଭିଯାନ ଇତ୍ୟାଦି କିମ୍ବଦନ୍ତୀ, ଉତ୍କଳ ଇତିହାସର ଏକ ଏକ ଜାଜ୍ୱଲ୍ୟମାନ ଦୃଷ୍ଟାନ୍ତ, ଏ ସବୁର ଉତ୍କୃଷ୍ଟ ପ୍ରମାଣ ଅଟେ ।

ଏହି ଗ୍ରାମରେ ଦୁଇଟି ଭାଗବତ ଟୁଙ୍ଗୀ ଥିବା କଥା ଉଲ୍ଲେଖ କରାଯାଇଛି । କେବଳ ଏହି ଗ୍ରାମ ନୁହେଁ, ଉତ୍କଳରେ ଶ୍ରେଷ୍ଠ ବଡ଼ ଏଭଳି କୌଣସି ଗ୍ରାମ ବା ସହର ନାହିଁ, ଯେଉଁଠାରେକି ଭାଗବତ ଟୁଙ୍ଗୀ ପ୍ରତିଷ୍ଠିତ ହୋଇନାହିଁ । ତେଣୁ ଏ ସ୍ଥଳରେ ଭାଗବତ ଟୁଙ୍ଗୀର ଐତିହାସିକ ତାତ୍ପର୍ଯ୍ୟ ସମ୍ପର୍କରେ ଏକ ସଂକ୍ଷିପ୍ତ ଆଲୋଚନା ଏକାନ୍ତ ଆବଶ୍ୟକ ହେଉଅଛି ।

୧୫୧୦ ଖ୍ରୀଷ୍ଟାବ୍ଦରେ ଯୁଗାବତାର ଶ୍ରୀ ଚୈତନ୍ୟ ମହାପ୍ରଭୁ ଉତ୍କଳ ଆଗମନ କରି ୨୪ ବର୍ଷ ଯାବତ୍ ନୀଳାଚଳ କ୍ଷେତ୍ରରେ ତାହାଙ୍କର ସନ୍ନ୍ୟାସ ଜୀବନ ଅତିବାହିତ କରିଥିଲେ । ତାହାଙ୍କର ପିତା ଶ୍ରୀ ଜଗନ୍ନାଥ ମିଶ୍ର ଓ ମାତା ଶଚୀ ଦେବୀ, ଉତ୍କଳୀୟ ବ୍ରାହ୍ମଣ ଅଟନ୍ତି । ଶ୍ରୀ ଜଗନ୍ନାଥ ମିଶ୍ର ସଂସ୍କୃତ ଅଧ୍ୟାପକ ରୂପେ, ତତ୍କାଳୀନ ବଙ୍ଗ ରାଜଧାନୀ ନବଦ୍ୱୀପ ସହରର ସଂସ୍କୃତ ମହାବିଦ୍ୟାଳୟରେ ଶିକ୍ଷକତା କାର୍ଯ୍ୟ କରି, କ୍ରମେ ଗଲ ବାଦଶାହ ଆକବରଙ୍କ କର୍ତ୍ତୃକ ରାଜ-ଦତ୍ତ ବୃତ୍ତି ପାଇ କାଳକ୍ରମେ ସେଠାକାର ସ୍ଥାୟୀ ଅଧିବାସୀ ହୋଇ ଯାଇଥିଲେ । ଶ୍ରୀ ଚୈତନ୍ୟ ୨୪ ବର୍ଷ ବୟସରେ ସନ୍ନ୍ୟାସ ଧର୍ମ ଗ୍ରହଣ ପୂର୍ବକ, ବୈଷ୍ଣବ ଧର୍ମ ଯଜନ ଯାଜନର ପ୍ରକୃଷ୍ଟ ସ୍ଥାନ ରୂପେ ନୀଳାଚଳ ଧାମକୁ ଶ୍ରେଷ୍ଠ ସ୍ଥାନ ମନେକରି ସେଠାକୁ ଆସିଥିଲେ । ସେତେବେଳେ ସମଗ୍ର ଭାରତରେ କେବଳ ଉତ୍କଳ ହିଁ, ସ୍ୱାଧୀନ ହିନ୍ଦୁ ରାଷ୍ଟ୍ର ରୂପେ ଗଜପତି ପ୍ରତାପ-ରୁଦ୍ରଙ୍କ ଦ୍ୱାରା ଶାସିତ ହେଉଥିଲା ।

ଷୋଡ଼ଶ ଶତାବ୍ଦୀରେ ସମଗ୍ର ଭାରତବର୍ଷରେ ୪ ଗୋଟି ସଂସ୍କୃତ ମହାବିଦ୍ୟାଳୟ ଥିଲା । ସେତେବେଳେ ଦେଶର ବିଭିନ୍ନ

ସହର ଓ ଗ୍ରାମାଞ୍ଚଳମାନଙ୍କରେ ପ୍ରତିଷ୍ଠିତ ସଂସ୍କୃତ ବିଦ୍ୟାଳୟ-ମାନଙ୍କରୁ ଉତ୍ତୀର୍ଣ୍ଣଯୋଗ୍ୟ ଛାତ୍ରମାନଙ୍କୁ ଯୋଗ୍ୟତାଗତ ପ୍ରମାଣ ପତ୍ର ପାଇବା ପାଇଁ ଉପରୋକ୍ତ ୪ ଗୋଟି ମହାବିଦ୍ୟାଳୟମାନଙ୍କ ମଧ୍ୟରୁ କୌଣସି ଏକ ବିଶ୍ୱ ବିଦ୍ୟାଳୟରେ ପରୀକ୍ଷା ଦେବାକୁ ପଡ଼ୁଥିଲା । ପର୍ଯ୍ୟାୟ କ୍ରମେ ଏହି ୪ ଗୋଟି ବିଶ୍ୱ ବିଦ୍ୟାଳୟର ନାମ ହେଲା, ଅଯୋଧ୍ୟା ବିଦ୍ୟାପୀଠ, କାଶି ବିଦ୍ୟାପୀଠ, ନବଦ୍ୱୀପ ବିଦ୍ୟାପୀଠ ଏବଂ ନୀଳାଚଳ ବିଦ୍ୟା ପୀଠ । ଏହି ବିଶ୍ୱ ବିଦ୍ୟାଳୟ-ମାନ ମୋଗଲ ଶାସନାନୁମୋଦିତ ଥିଲେ । ଏ ସବୁରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ତମ୍ବା ପଟାର ସନନ୍ଦ ବା ଯୋଗ୍ୟତାଗତ ପ୍ରମାଣ ପତ୍ର ମିଳୁଥିଲା । ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଏକଧାରରେ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା ମନ୍ତ୍ରୀ ଓ ନୀଳାଚଳ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ ।

"ଶ୍ରୀ ଚୈତନ୍ୟ ଚରିତାମୃତ" ଗ୍ରନ୍ଥରୁ ପ୍ରମାଣ ମିଳେ ଯେ, ୧୦ ହଜାର ଛାତ୍ରଛାତ୍ରୀ, ସେ ସମୟରେ ନୀଳାଚଳ ମହାବିଦ୍ୟା-ପୀଠରେ ଅଧ୍ୟୟନ କରୁଥିଲେ ଏବଂ ପ୍ରାୟ ୭୦୦ ଅଭିଜ୍ଞ ଅଧ୍ୟାପକ, ଅଧ୍ୟାପନା ଦାୟିତ୍ୱରେ ଥିଲେ । ଛାତ୍ରମାନେ ବେଦାନ୍ତ ଦର୍ଶନ, ସାହିତ୍ୟ, ପଦାର୍ଥ ବିଜ୍ଞାନ ଏବଂ ମନୁସଂହିତାର ରାଜନୀତି ବିଜ୍ଞାନ, ବିଭିନ୍ନ ବିଷୟକ ଶିକ୍ଷାଲାଭ କରୁଥିଲେ । ଉତ୍କଳର ଗଜପତି ସମ୍ରାଟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏକ ବିରାଟ ସାମ୍ରାଜ୍ୟରେ ପ୍ରଜା ମତାନୁଗତିକ ଶାସନ ସୁଚାରୁ ରୂପେ ତୁଲାଉ ଥିଲେ । ରାଜର୍ଷି "ରାୟ ରାମାନନ୍ଦ" ଦାକ୍ଷିଣାତ୍ୟରେ ଗଜପତି ପ୍ରତାପରୁଦ୍ରଙ୍କ ପ୍ରତିନିଧି ରୂପେ ଶାସକ ନିଯୁକ୍ତ ଥିଲେ । ସମ୍ରାଟ ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ଉତ୍କଳୀୟମାନେ ପବିତ୍ର, ଆନନ୍ଦ-

ମୟ, ଧର୍ମ ଜୀବନଯାପନ କରୁଥିଲେ । ଧର୍ମ, ସାହିତ୍ୟ, ଭାସ୍କର୍ଯ୍ୟ, କଳା ଇତ୍ୟାଦି ପ୍ରତ୍ୟେକ ଦିଗରେ ସମଗ୍ର ଭାରତ ବର୍ଷରେ ଉତ୍କଳ ଏକ ସମୃଦ୍ଧ ରାଜ୍ୟ ରୂପେ ପ୍ରତିଷ୍ଠା ଲାଭ କରିଥିଲା ।

ଉତ୍କଳ ବ୍ୟତୀତ ଭାରତର ଅନ୍ୟ ସମସ୍ତ ରାଜ୍ୟ, ସେତେବେଳେ ମୁସଲମାନ ଶାସନାଧୀନ ଥିବାରୁ ବୈଦେଶିକ ପର୍ଯ୍ୟଟକ ଓ ପରିଦର୍ଶକମାନଙ୍କର ଉତ୍କଳ ଆଗମନ ନିମିତ୍ତ, ସମ୍ରାଟଙ୍କର ଅନୁମତି ପତ୍ର ଅର୍ଥାତ୍ ଅଭ୍ୟାଦେଶ ଆବଶ୍ୟକ ହେଉଥିଲା । ଏହି ବିଭାଗର ଦାୟିତ୍ୱ ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ଉପରେ ନ୍ୟସ୍ତ ଥିଲା । ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କୁ ନୀଳାଚଳ କ୍ଷେତ୍ର ବାସ ନିମିତ୍ତ, ଶ୍ରୀ ଭଟ୍ଟାଚାର୍ଯ୍ୟ ଅନୁମତି ପ୍ରଦାନ କରିଥିଲେ ଏବଂ ମହାରାଜା ପ୍ରତାପ-ରୁଦ୍ର-ଦେବଙ୍କୁ ମହାପ୍ରଭୁଙ୍କର ପରିଚୟ ପ୍ରଦାନ କରିଥିଲେ ।

ମହାରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱ ସମୟ, ଓଡ଼ିଶା ଇତିହାସରେ ଏକ ଗୌରବମୟ ଅବିସ୍ମରଣୀୟ ଅଧ୍ୟାୟ । ଏହି ସମୟରେ ଉତ୍କଳର ପଞ୍ଚସଖା:— ଶ୍ରୀ ଜଗନ୍ନାଥ ଦାସ, ଶ୍ରୀ ବଳରାମ ଦାସ, ଶ୍ରୀ ଅଚ୍ୟୁତାନନ୍ଦ ଦାସ, ଶ୍ରୀ ଅନନ୍ତ ଦାସ (ଶିଶୁ ଅନନ୍ତ) ଓ ଶ୍ରୀ ଯଶୋବନ୍ତ ଦାସ ପ୍ରମୁଖ ମହାପୁରୁଷମାନଙ୍କର ଆବିର୍ଭାବ ଘଟିଥିଲା । ଏମାନଙ୍କ ଦ୍ୱାରା, ଶ୍ରୀ ମଦ୍ଭାଗବତ, ମହାଭାରତ, ହରିବଂଶ ଓ ଅନ୍ୟାନ୍ୟ ବହୁ ମୌଳିକ ସଂସ୍କୃତ ଗ୍ରନ୍ଥମାନ ଓଡ଼ିଆ ଭାଷାରେ ଅନୁଦିତ ହୋଇଥିଲା । ଏହା ବ୍ୟତୀତ ଏହି ଭକ୍ତମାନେ ନିଜ, ନିଜ ମତବାଦାନୁଯାୟୀ, ବହୁ ସଂହିତା, କାବ୍ୟ-କବିତା ଓ ଛାନ୍ଦ; ଚଉତିଶାଦି ଭକ୍ତିମୂଳକ କାବ୍ୟ ଗ୍ରନ୍ଥ ରଚନା କରି; ଓଡ଼ିଆ

ସାହିତ୍ୟର ମୌଳିକତା ଓ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପୂର୍ବକ; ବଶ୍ୱ ସାହିତ୍ୟର ଶ୍ରୀ ବୃଦ୍ଧି ସାଧନ କରିଛନ୍ତି ।

ଶ୍ରୀମନ୍ଦିରର ଦକ୍ଷିଣବର୍ତ୍ତୀ କଳ୍ପବଟର ପବିତ୍ର ସୁଶୀତଳ ଛାୟା ତଳେ, ଶ୍ରୀ ଜଗନ୍ନାଥ ଦାସ ପ୍ରତ୍ୟହ ସଂସ୍କୃତ ଭାଗବତର ଗୋଟିଏ ଅଧ୍ୟାୟର ଓଡ଼ିଆ ଅନୁବାଦ ନିୟମିତ ଭାବେ କରନ୍ତି ଏବଂ ସନ୍ଧ୍ୟାରେ ସହସ୍ର ସହସ୍ର ନରନାରୀଙ୍କୁ ତାଙ୍କର ସେହି ସରଳ ନବାକ୍ଷରୀ ଭାଗବତ ପଦାବଳୀ ଆବୃତ୍ତି କରି ଶୁଣାନ୍ତି । ଆବୃତ୍ତି କଲାବେଳେ ଶ୍ରୀ ମଦ୍ଭାଗବତର, କଠିନ ତାତ୍ତ୍ୱିକ ପ୍ରସଙ୍ଗ ଓ ଶ୍ରୀକୃଷ୍ଣଙ୍କର ମଧୁର ଲୀଳା ପ୍ରସଙ୍ଗରେ ଏପରି ତନ୍ମୟ ହୋଇ ପଡ଼ନ୍ତି ଯେ, ତାଙ୍କ ସର୍ବାଙ୍ଗରେ ଅଶ୍ରୁ, କମ୍ପନ, ପୁଲକାଦି ଅଷ୍ଟ ସାତ୍ତ୍ୱିକ ବିକାରମାନ ପ୍ରକାଶ ପାଇଥାଏ । ଶ୍ରୋତୃମଣ୍ଡଳୀ ମଧ୍ୟ ଭାବାବିଷ୍ଟ ହୋଇ, ତଦ୍‌ଗତ ଭାବ ପରିପୂର୍ଣ୍ଣ ହୁଅନ୍ତି ।

ପ୍ରତ୍ୟହ ଶ୍ରୀ ଚୈତନ୍ୟ ଦେବ, ଶ୍ରୀ ଜଗନ୍ନାଥଙ୍କର ସନ୍ଧ୍ୟା ଆରତି ଦର୍ଶନାନ୍ତେ କଳ୍ପବଟ ମୂଳକୁ ଯାଇ ଶ୍ରୀ ଦାସଙ୍କର ଭାଗବତ ପାଠ ଓ ବ୍ୟାଖ୍ୟା ଅନତି ଦୂରରେ ଦଣ୍ଡାୟମାନ ହୋଇ ଶ୍ରବଣ କରନ୍ତି । ଅକସ୍ମାତ ଦିନେ ଶ୍ରୀ ଜଗନ୍ନାଥ ଦାସଙ୍କର ଦୃଷ୍ଟି, ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଉପରେ ପଡ଼ିଗଲା । ଦାସେ ସସମ୍ଭ୍ରମେ ଦଣ୍ଡାୟମାନ ହୁଅନ୍ତେ; ଶ୍ରୀ ମନ୍ମହା ପ୍ରଭୁ ପ୍ରେମା-ବିଷ୍ଟ ହୋଇ, ଛୁଟି ଯାଇ ତାହାଙ୍କୁ ଆଲିଙ୍ଗନ କଲେ । ଶ୍ରୀ ଜଗନ୍ନାଥ ଦାସ କାନ୍ଦି କାନ୍ଦି କହିଲେ, "ମହାପ୍ରଭୁ! ମୁଁ ଅତି ସ୍ଲେଚ୍ଛ, ନରାଧମ, ଆପଣ ମୋର ଅପବିତ୍ର ଶରୀର ସ୍ପର୍ଶ କଲେ !" ମହାପ୍ରଭୁ କହିଲେ, "କିଏ କହେ ତୁମେ ଅତି ସ୍ଲେଚ୍ଛ; ତୁମେ ପ୍ରକୃତରେ ଅତି ବଡ଼

(ଭୂମି ଅତି ବଡ଼) ।” ସେହି ଦିନଠାରୁ ଶ୍ରୀ ଜଗନ୍ନାଥ ଦାସ, "ଅତି ବଡ଼ ଜଗନ୍ନାଥ ଦାସ” ନାମରେ, ଭାରତରେ ସର୍ବତ୍ର ପରିଚିତ ହେଲେ ।

ଶ୍ରୀ ଜଗନ୍ନାଥ ଦାସଙ୍କ ପ୍ରାର୍ଥନା କ୍ରମେ, ଶ୍ରୀ ମନ୍ମହା ପ୍ରଭୁ ତାହାଙ୍କୁ ଦୀକ୍ଷା ମନ୍ତ୍ର ପ୍ରଦାନ ପୂର୍ବକ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । ଶ୍ରୀ ଦାସଙ୍କ ଅନୁବାଦିତ ଓଡ଼ିଆ ଭାଗବତକୁ ଉତ୍କଳର ଗ୍ରାମ ତଥା ସହରରେ ଆନୁଷ୍ଠାନିକ ଭାବେ ସ୍ଥାପନ କରି, ଏହାଙ୍କର ନିୟମିତ ପୂଜା ପାଠ କରାଇବା ନିମିତ୍ତ ଆଦେଶ କରିଥିଲେ ଏବଂ ନୂତନ ପ୍ରବର୍ତ୍ତିତ ଭାଗବତ ଧର୍ମର ନାମ “ଜଗନ୍ନାଥ ଧର୍ମ” ରଖାଯିବା ଲାଗି ମଧ୍ୟ ଶ୍ରୀ ଦାସଙ୍କୁ ଜଣାଇ ଦେଇଥିଲେ । ସେହି ଦିନଠାରୁ ଉତ୍କଳର ଘରେ ଘରେ ଏକ ନୂତନ ବୈଷ୍ଣବ ଧର୍ମ, “ଜଗନ୍ନାଥ ଧର୍ମ” ନାମରେ ପ୍ରସାର ଲାଭ କରିବାକୁ ଲାଗିଲା । ଏହାର ସୁ-ପରିଣତି ସ୍ୱରୂପ ଓଡ଼ିଶାର ପ୍ରତ୍ୟେକ ଗ୍ରାମ ଓ ସହର ମାନଙ୍କରେ ଭାଗବତ ଟୁଙ୍ଗୀ ପ୍ରତିଷ୍ଠିତ ହୋଇଛନ୍ତି । ଶ୍ରୀ ବ୍ୟାସ ଦେବଙ୍କ ରଚିତ ମୂଳ ସଂସ୍କୃତ ଭାଗବତର ପ୍ରଥମ ଉଦ୍‌ଘାଟନ, ତାହାଙ୍କର ଜନ୍ମ-ତିଥି ଆଷାଢ଼ ପୂର୍ଣ୍ଣିମାରେ କରାଯାଇଥିଲା । କିନ୍ତୁ ଶ୍ରୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ, ସର୍ବ ପ୍ରଥମ ଭାଦ୍ରବ ପୂର୍ଣ୍ଣିମା ତିଥିରେ ଆତ୍ମପ୍ରକାଶ କରିଥିବାରୁ, ଉତ୍କଳର ସର୍ବତ୍ର, ଏହି ତିଥିକୁ ଭାଗବତ ଜୟନ୍ତୀ ରୂପେ ପାଳନ କରାଯାଏ ଏବଂ ଏହି ଦିନଠାରୁ ଶ୍ରୀ ମଦ୍ଭାଗବତ ପାଠ ଆରମ୍ଭ ଏକ ପବିତ୍ର ଉତ୍ସବ ମାଧ୍ୟମରେ କରାଯାଏ ।

କାଳ ଚକ୍ରର ଆବର୍ତ୍ତନ ଜନିତ ଘଟଣାବଳୀର ଘାତ ପ୍ରତିଘାତ ଫଳରେ ଉତ୍କଳୀୟ ଧର୍ମ ଓ ସଂସ୍କୃତିର ବହୁ ବିପର୍ଯ୍ୟୟ ଘଟିଥିଲେ ମଧ୍ୟ, ସନ୍ଧ୍ୟା ସମୟରେ କଠୋର କର୍ମଶ୍ରାନ୍ତ, ସରଳ ଓଡ଼ିଆ କୃଷକ, ତାହାର ସେହି ପୂର୍ବ ପୁରୁଷର ଗୌରବମୟ ପରମ୍ପରାର ସମ୍ପୂର୍ଣ୍ଣ ବିଲୁପ୍ତି ଘଟାଇ ନାହିଁ । ବର୍ତ୍ତମାନ ସୁଦ୍ଧା ଦାରୁଣ ନିଦାଘର ସନ୍ଧ୍ୟା, ଅନ୍ଧକାରଚ୍ଛନ୍ନ ଝଡ଼ ବର୍ଷାର ସନ୍ଧ୍ୟା ଓ କାଲୁଆ ଶୀତ ସନ୍ଧ୍ୟା, ଏହି ସମସ୍ତ ତାହାର ଭାଗବତ ଟୁଙ୍ଗୀର ବସନ୍ତର ପୁଲକ ଭରା ସନ୍ଧ୍ୟା ହୋଇ ରହିଛି । ଗୃହିଣୀ ତାର, ଭାଗବତ ଟୁଙ୍ଗୀରେ ସଞ୍ଜ ସଳିତା ଜଳାଇ ଦେଇଯିବା ପରେ ପରେ ଓଡ଼ିଆ କୃଷକ ତାର ପାଞ୍ଚ ଭାଇଙ୍କୁ ନେଇ; ଆସିଯାଏ ଏହି ଟୁଙ୍ଗୀକୁ । ଦୁଇ ପଦ ମଙ୍ଗଳାଚରଣ ଶ୍ଳୋକ ସମ ସ୍ୱରରେ ଆବୃତ୍ତି ପରେ, ଆରମ୍ଭ କରେ ଶ୍ରୀ ମଦ୍ଭାଗବତର ପାଠ—"ଶ୍ରୀ ଶୁକ ଉବାଚ, ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ" ଇତ୍ୟାଦି । ଏହାହିଁ ହେଲା ତାହାର ଦୈନିକ ସମ୍ବାଦ, ବେତାର ଯନ୍ତ୍ରର ପୁରାତନୀ ଓ ଆଧୁନିକ ପଲ୍ଲୀ ସଙ୍ଗୀତର ମର୍ମସ୍ପର୍ଶୀ ଛନ୍ଦଭରା ଗାନ ଓ ଅର୍ଥ ପରମାର୍ଥର ସମନ୍ୱୟ ପୀଠ ।

ମୁଁ ବ୍ୟକ୍ତିଗତ ଭାବେ ବିଶେଷ ଗୌରବାନ୍ୱିତ ଯେ, ଏହି କୃଷ୍ଣଚନ୍ଦ୍ରପୁର ଗ୍ରାମର କୃଷକ ଭାଇମାନେ ଅବଧି ପ୍ରତ୍ୟହ ସନ୍ଧ୍ୟାରେ ଭାଗବତ ଟୁଙ୍ଗୀକୁ ଆସି, ଜାତିର ପରମ୍ପରା ରକ୍ଷା କରି ଆସୁଛନ୍ତି । ଅଧ୍ୟାୟ ଶେଷରେ "କହଇ ଜଗନ୍ନାଥ ଦାସ, ସୁଜନ ପଦେ କରି ଆଶ" ଏହି ପ୍ରାଣ ସ୍ପର୍ଶୀ ଭାବାବେଗ ପୂର୍ଣ୍ଣ ପଦାବଳୀ ଯେତେବେଳେ ପାଠକ ସହ ଶ୍ରୋତାମାନେ ସମ ସ୍ୱରରେ ଦୁଆ ଧରି ଆବୃତ୍ତି କରନ୍ତି; ସେତେବେଳେ କେଉଁ ଓଡ଼ିଆର ପ୍ରାଣ,

ଗବଂଷ୍ଠୀତ ନହେବ କମ୍ବା କେଉଁ ପାଷାଣ୍ଡର କର୍କଶ ପ୍ରାଣ ଦ୍ରବଭୂତ ନହେବ ?

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରୁ ଅତିବଡ଼ି ଜଗନ୍ନାଥ ଧର୍ମ ଆବ୍ରାହ୍ମଣ ଓଡ଼ିଆର କୌଳିକ ଧର୍ମ ବା ଜାତୀୟ ଧର୍ମ ରୂପେ ଗୃହୀତ ହୋଇଅଛି । ଉତ୍କଳୀୟ ପ୍ରଥାନୁଯାୟୀ ପ୍ରତ୍ୟେକ ଓଡ଼ିଆ ସନ୍ତାନ ଶୈଶବାବସ୍ଥାରୁ ନିଜ ନିଜର କୁଳଗୁରୁଙ୍କ ଠାରୁ ଦୀକ୍ଷା ମନ୍ତ୍ର ଗ୍ରହଣ ପୂର୍ବକ ଅତିବଡ଼ି ହିନ୍ଦୁ ଭାବରେ ସମାଜର ସ୍ୱୀକୃତି ଲାଭ କରିଥାଏ । ଏହି ମୁଖ୍ୟ ସଂସ୍କାରରେ ସଂସ୍କୃତ ନହେବା ପର୍ଯ୍ୟନ୍ତ ଓଡ଼ିଆର ବିବାହାଦି ଶୁଭ କାର୍ଯ୍ୟ ହୋଇପାରେ ନାହିଁ । ଅଳ୍ପ କେତେକ ଓଡ଼ିଆର କୁଳଗୁରୁ ଅନ୍ୟ ଧର୍ମ ମତବାଦୀୟ ଥିଲେ ହେଁ, ଅତିବଡ଼ି ଅର୍ଥାତ୍, ଭଗବତ ଧର୍ମ ଓଡ଼ିଆର ଜାତୀୟ ଧର୍ମ ଅଟେ ।

ଓଡ଼ିଆ ଭାଷା ଯେପରି ସଂସ୍କୃତର ନିକଟତମ ଭାଷା ଓଡ଼ିଆ ସଂସ୍କୃତି ସେହିପରି ବିଶ୍ୱ ହିନ୍ଦୁ ସଂସ୍କୃତିର ନିକଟତମ ସଂସ୍କୃତି । ସରଳ ଭାରତୀୟମାନଙ୍କ ମଧ୍ୟରେ ଓଡ଼ିଆ ସରଳତମ । ତାହାର ଖାଦ୍ୟ, ପରିଧେୟ, ଆଚାର-ବ୍ୟବହାର, ପୁଣ୍ୟ-ପର୍ବ ସମସ୍ତଙ୍କି ନିରାଡ଼ମ୍ବର ସରଳ ପରିବେଶ ମଣ୍ଡିତ ।

କେହି ଯଦି ମନେକରନ୍ତି, ସ୍ୱାଧୀନତା ପରେ ଭାରତ ଧର୍ମ ନିରପେକ୍ଷ ରାଷ୍ଟ୍ରରେ ପରିଣତ ହୋଇଛି, ତେବେ ସେ ଭୁଲ୍ ବୁଝନ୍ତି । କାରଣ ସନାତନ ଧର୍ମହିଁ ଏକ ମତବାଦ ନିରପେକ୍ଷ ଧର୍ମ । ପ୍ରତ୍ୟେକ ଭାରତୀୟ ଏହି ଧର୍ମ ନିରପେକ୍ଷତାର ଏକ ଏକ ପ୍ରତୀକ ।

ଯେଉଁମାନେ ଏହି ପୁସ୍ତିକା କଥିତ ବାଞ୍ଛାନିଧି, ବାଳକୃଷ୍ଣ ଓ ବ୍ରଜବନ୍ଧୁ ପ୍ରମୁଖ ପୁଣ୍ୟାତ୍ମାମାନଙ୍କ ଜୀବନ ଚରିତ ପ୍ରତ୍ୟକ୍ଷ ଅବଗତ ଥିବେ, ବାସ୍ତବ ଭାରତୀୟତାର ତାତ୍ପର୍ଯ୍ୟ ବୁଝିବା ସେମାନଙ୍କ ପକ୍ଷେ ବିଶେଷ ଆୟାସସାଧ୍ୟ ହେବ ନାହିଁ । ବାଞ୍ଛାନିଧି ପାଞ୍ଚହାତ ମୋଟା ଖଦି ପିନ୍ଧନ୍ତି । ଜମିଦାର ହୋଇ ସୁଦ୍ଧା ସୂକ୍ଷ୍ମ ଧୋତି, ପଞ୍ଜାବି ଧନେ ହେଲେ ବ୍ୟବହାର କରି ନଥିଲେ । ବ୍ରାହ୍ମଣ ହୋଇ ମଧ୍ୟ ଏହି ଭ୍ରାତାଗଣ ଅସ୍ପୃଶ୍ୟତାର ତୀବ୍ର ବିରୋଧୀ ଥିଲେ । ଶ୍ରୀ ବାଞ୍ଛାନିଧି ଓ ବାଳକୃଷ୍ଣଙ୍କର ଶ୍ରୀ ମଦ୍ଭାଗବତ ଗୀତାର ଅଠରଟି ଯାକ ଅଧ୍ୟାୟ ପୂର୍ଣ୍ଣରୂପେ କଣ୍ଠସ୍ଥ ଥିଲା ଏବଂ ପ୍ରତ୍ୟହ ଅପରାହ୍ନରେ ସେ ଏହା ଆମୂଳଚୂଳ ଉଚ୍ଚ ସ୍ୱରରେ ଆବୃତ୍ତି କରୁଥିଲେ । ଏହା ବ୍ୟତୀତ ବେଦ-ବେଦାନ୍ତୀୟ ବହୁ ସ୍ତବ, ସ୍ତୋତ୍ର, ମନ୍ତ୍ରାଦି ଏହାଙ୍କର ଦୈନିକ ପାଠ୍ୟ ମଧ୍ୟ ଥିଲା । କହିବା ବାହୁଲ୍ୟ ଯେ, ଏମାନଙ୍କର ଆତିଥ୍ୟପରାୟଣତା, ଦୟା-ଦାକ୍ଷିଣ୍ୟାଦି ସଦ୍‌ଗୁଣାବଳୀ ବାସ୍ତବ ଭାରତୀୟତାର ଜୀବନ୍ତ ନିଦର୍ଶନ । ଏମାନେ ବାସ୍ତବରେ ଆର୍ଯ୍ୟ ଧର୍ମର ପ୍ରତୀକ ଥିଲେ ।

ସମ୍ପ୍ରତି ଗ୍ରାମର ଯୁବକ-ଯୁବତୀମାନେ ଏ ଯୁଗୀୟ ବିଭିନ୍ନ ମହାପୁରୁଷଙ୍କ ଧର୍ମୀୟ ସମ୍ପ୍ରଦାୟଭୁକ୍ତ ହୋଇଥିଲେ ମଧ୍ୟ ପରସ୍ପର ମଧ୍ୟରେ ସମନ୍ୱୟ ରକ୍ଷା କରି ଧର୍ମାଚରଣ କରନ୍ତି । ଏମାନେ ବୈଷ୍ଣବଗୁରୁ, ସଂକୀର୍ତ୍ତନ କେଶରୀ ଶ୍ରୀ ରାମଦାସ ପ୍ରବର୍ତ୍ତିତ ବୈଷ୍ଣବ ସମ୍ପ୍ରଦାୟ, ଅନୁକୂଳ ଠାକୁର ପନ୍ଥୀ ସତ୍‌ସଙ୍ଗ ଏବଂ ଶ୍ରୀମା', ସାଇବାବା, ଶ୍ରୀ ରାମକୃଷ୍ଣ ପରମହଂସ, ଠାକୁର ନିଗମାନନ୍ଦ ଓ ଶିବାନନ୍ଦ ପ୍ରମୁଖ ମହାପୁରୁଷଙ୍କ ସମ୍ପ୍ରଦାୟର ଭକ୍ତ ଅଟନ୍ତି ।

ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକତାର ମୂଲ୍ୟବୋଧ ଏ ଗ୍ରାମର ନାଗରିକମାନଙ୍କ ଠାରେ ବେଶ୍ ପରିଲକ୍ଷିତ ହୁଏ । ଏମାନେ ବିଭିନ୍ନ ଭାରତୀୟ ରାଜନୈତିକ ଦଳର ସମର୍ଥକ ତଥା କର୍ମୀ ଥିଲେ ମଧ୍ୟ ଆଦର୍ଶଗତ ମତଭେଦ ବା ସଂଘର୍ଷ ଏମାନଙ୍କ ମଧ୍ୟରେ ନଥାଏ ।

ଗ୍ରାମର ବ୍ୟକ୍ତିଗତ ବିବାହ, ବ୍ରତାଦି ଉତ୍ସବ, ସାମାଜିକ ପର୍ବ-ପର୍ବାଣୀ ଓ ସାମୂହିକ ସାଂସ୍କୃତିକ ଅନୁଷ୍ଠାନାଦି ଶାନ୍ତିପୂର୍ଣ୍ଣଭାବରେ ସହଯୋଗ ସୂତ୍ରରେ ଗ୍ରାମବାସୀମାନଙ୍କ ଦ୍ୱାରା ସମାହିତ ହୁଏ ।

ସ୍ଥୂଳତଃ କୃଷ୍ଣଚନ୍ଦ୍ରପୁର ଗ୍ରାମଟି ଆୟତନରେ କ୍ଷୁଦ୍ର ହେଲେ ମଧ୍ୟ ଆଦର୍ଶବାଦିତା ଦୃଷ୍ଟିରୁ ଏହା ଏକ ମର୍ଯ୍ୟାଦା ସମ୍ପନ୍ନ ଗ୍ରାମ ଅଟେ । ଭାରତ ତଥା ଉତ୍କଳର ଜାତୀୟତାରେ ଗ୍ରାମବାସୀ-ମାନେ ବେଶ୍ ଉଦ୍‌ବୁଦ୍ଧ । ସୁତରାଂ ଗ୍ରାମାଧିବାସୀମାନେ ଜାତୀୟବାଦୀ ବା ଗାନ୍ଧୀବାଦୀ ଥିବାରୁ, ଏମାନେ ବାସ୍ତବିକ ରାଷ୍ଟ୍ରୀୟ ନାଗରିକ ରୂପେ ପ୍ରଶଂସିତ ।

ଝଙ୍କଡ଼ବାସିନୀ ମା ଶାରଳା ଠାକୁରାଣୀ ଉତ୍କଳର ଏକ ପ୍ରସିଦ୍ଧ ଦେବୀ ଅଟନ୍ତି । ତାହାଙ୍କ ଅଧିଷ୍ଠାନ ସ୍ଥଳୀଠାରୁ ପୂର୍ବ ଦିଗସ୍ଥ ସାଗର ବେଳାଭୂମି ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ "ଶାରଳା ମଣ୍ଡଳ" ନାମରେ ଖ୍ୟାତ । "ଶାରଳା ମଣ୍ଡଳ" ମଧ୍ୟରେ ବୈଦିକ ଆର୍ଯ୍ୟ ଯୁଗୀୟ ସଂସ୍କୃତିମାନ ରହିଥିବାର ଦେଖାଯାଏ ।

କୃଷ୍ଣଚନ୍ଦ୍ରପୁରର ପଶ୍ଚିମକୁ ପ୍ରାୟ ଦୃଇ କିଲୋମିଟର ଦୂରରେ ଭୁଜଙ୍ଗ ନାମକ ଗ୍ରାମ ଅବସ୍ଥିତ । ଏଠାରେ "ତୀର୍ଥ ମଠ" ନାମକ ଏକ ମଠ ଅଛି । ମଠର ସେବିତ ବିଗ୍ରହ ପର୍ଶୁରାମ, ତାଙ୍କ ପିତା ଋଷି ଯମଦଗ୍ନି ଓ ମାତା ରେଣୁକା । କଥିତ ଅଛି, ପର୍ଶୁରାମ, ମାତୃହତ୍ୟା ଅପରାଧ ମୁକ୍ତ ନିମିତ୍ତ ସ୍ୱହସ୍ତରେ ମୁଗୁନି ପ୍ରସ୍ତରରେ ପିତା-ମାତାଙ୍କ ମୂର୍ତ୍ତି ଖୋଦିତ କରି, ଏଠାରେ ପୂଜା କରୁଥିଲେ ।

ପାରାଦ୍ୱୀପ ନିକଟବର୍ତ୍ତୀ ଜଙ୍ଗଲ ମଧ୍ୟରେ ରାମଚଣ୍ଡୀ ମନ୍ଦିର । ଭଗବାନ ରାମଚନ୍ଦ୍ର ବନବାସ ସମୟରେ ଏହି ଦେବୀ ବିଗ୍ରହ ସ୍ୱହସ୍ତରେ ପ୍ରତିଷ୍ଠା କରିଥିଲେ । ଯୁଗ ଚକ୍ରର ଗାଣିତିକ ହିସାବରୁ ଜଣାଯାଏ, ରାମଚନ୍ଦ୍ର ଆଜକୁ ପ୍ରାୟ ଆଠ ଲକ୍ଷ ପଞ୍ଚସ୍ତରୀ ହଜାର ବର୍ଷ ତଳେ ପୃଥିବୀରେ ପ୍ରକଟାବସ୍ଥାରେ ଥିଲେ । ସୁତରାଂ ଏ ଅଞ୍ଚଳର ସଭ୍ୟତା ବୈଦିକ ଯୁଗୀୟ ଅଟେ ।

ଏହି ଗ୍ରାମର ପୂର୍ବକୁ ଦୁଇ କିଲୋମିଟର ଦୂରସ୍ଥ ଏରସମା ଏ ଅଞ୍ଚଳର ସାମ୍ପ୍ରତିକ ସଦର ମହକୁମା । ଏଠାରେ ମୁକ୍ତନାଥଙ୍କ ସମାଧି ଅଛି । ଏହି ସମାଧି କୁଜଙ୍ଗର ରାଜା **କୃଷ୍ଣଚନ୍ଦ୍ର** ଷେଣ୍ଟଙ୍କ ଦ୍ୱାରା ପ୍ରତିଷ୍ଠିତ ।

ଏରସମା ସଂଲଗ୍ନ କାଣିପଦା ଗ୍ରାମର ସୀମାନ୍ତରେ ସିଦ୍ଧେଶ୍ୱର ନାମକ ଏକ ଗାଦି ବା ସମାଧି ଅଛନ୍ତି । ଏ ମଧ୍ୟ ଜଣେ ସିଦ୍ଧି ପ୍ରାପ୍ତ ଋଷିଙ୍କର ସମାଧି । ଏହି ଉଭୟ ସମାଧି ସ୍ଥାନୀୟ ଅଧିବାସୀଙ୍କ ଦ୍ୱାରା ବର୍ତ୍ତମାନ ମଧ୍ୟ ସେବିତ ହେଉଅଛନ୍ତି ଏବଂ

ମାନସିକ ଷାତ୍ତରେ ଭୋଗ-ରାଗ ଦେଇ ଅଭିଷ୍ଟ ଫଳ ପ୍ରାପ୍ତ ହେଉଅଛନ୍ତି ।

ଏ ସବୁଥିରୁ ପ୍ରମାଣିତ ହୁଏ ଯେ, ଏ ଅଞ୍ଚଳ ମଧ୍ୟ ଆର୍ଯ୍ୟା-ବର୍ତ୍ତ ପର ମୁନି, ଋଷି ଅଧ୍ୟୁଷିତ ଥିଲା । ସୁତରାଂ ଏ ଅଞ୍ଚଳ ବୈଦିକ ଯୁଗୀୟ ଆର୍ଯ୍ୟାବର୍ତ୍ତର ପୂର୍ବ ସୀମାନ୍ତ ଥିବାର ନିଃସନ୍ଦେହ ରୂପେ କୁହାଯାଇ ପାରେ ।



# ଲେଖକଙ୍କ ପରିଚିତି

ଲେଖକଙ୍କର ପୂର୍ବ ପୁରୁଷ ପୁରୀ ଜିଲ୍ଲା ଖୋରଧା ଅଞ୍ଚଳର "ମଲ୍ଲ" ସଜ୍ଞାଧାରୀ ଅଧିକାରୀ ଥିଲେ । ସ୍ୱାଧୀନ ଉତ୍କଳର ଗଜପତି ସମ୍ରାଟଙ୍କ ପଦାତିକ ବାହିନୀରେ କାର୍ଯ୍ୟକରି ଏମାନେ ମଲ୍ଲ ଉପାଧି ଲାଭ କରିଥିଲେ । ବର୍ତ୍ତମାନ ପ୍ରଚଳିତ ଥିବା, ବର୍ମା, ବେଶେଇ, ବିଶ୍ୱାଳ, ମନ୍ତ୍ରୀ, ଖୁଣ୍ଟିଆ, ନାୟକ, ପଟ୍ଟନାୟକ, ପରି, ମହାପାତ୍ର, ଦଳବେହେରା ପ୍ରଭୃତି ଉତ୍କଳୀରେ ସଜ୍ଞା ବା ଉପାଧି-ମାନ, ପ୍ରାଚୀନ, ଉତ୍କଳ ଇତିହାସର ଏକ ଏକ ଐତିହାସିକ ସୂଚନ ଅଟେ ।

ବଂଶ ବୃଦ୍ଧି କାରଣରୁ ଷୋଡ଼ଶ ଶତାବ୍ଦିରେ ଉପରୋକ୍ତ ଖଣ୍ଡାୟତ ପରିବାର ମଧ୍ୟରୁ କେତେକଙ୍କୁ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ତତ୍କାଳୀନ ରାଜ ସରକାରଙ୍କ ଦ୍ୱାରା, ସ୍ଥାନାନ୍ତରିତ କରା ଯାଇଥିଲା । ଉତ୍କଳ ସମ୍ରାଟଙ୍କ ଅନୁମତି କ୍ରମେ, କୁଜଙ୍ଗ ରାଜା ସ୍ଥାନାନ୍ତରିତ ଏକ ମଲ୍ଲ ପରିବାରକୁ, କୁଜଙ୍ଗ ଜିଲ୍ଲାନ୍ତର୍ଗତ "ବାଲଙ୍ଗ" ନାମକ ପଲ୍ଲୀ ଗ୍ରାମରେ ବସତି ଯୋଗାଇ ଦେଇଥିଲେ । ବର୍ତ୍ତମାନ ଏହି ଗ୍ରାମ, କଟକ ଜିଲ୍ଲାର ତିର୍ତ୍ତୋଲ ଥାନା ଅନ୍ତର୍ଗତ ଅଟେ । ଅତିବଡ଼ି ଶ୍ରୀ ଜଗନ୍ନାଥ ଦାସ ଓଡ଼ିଶାରେ "ଅତିବଡ଼ି ଜଗ-ନ୍ନାଥ ଧର୍ମ ବା ଅତିବଡ଼ି ବୈଷ୍ଣବ ଧର୍ମ" ପ୍ରଚ୍ଚାର କରିବା ସମୟରେ, "ବାଲଙ୍ଗ"ର ମଲ୍ଲ ପରିବାର ଏହି ଧର୍ମ ମତରେ ଦୀକ୍ଷିତ ହୋଇ ଦାସ ସଜ୍ଞା ପ୍ରାପ୍ତ ହୋଇଥିଲେ ।

ଘନବନ୍ଧୁ ଦାସ ନାମକ ଏହି ପରିବାରର ଜନୈକ ଖଣ୍ଡାୟତ ବୈଷ୍ଣବ ବାଲଙ୍ଗ ଗ୍ରାମରେ ସ୍ଥାନାଭାବ କାରଣରୁ, ନିଜର ଜ୍ୟେଷ୍ଠ ପୁତ୍ର ବାଞ୍ଛାନିଧିଙ୍କ ବ୍ୟତୀତ ଅଭିରାମ, ରାଘବ ଓ ରାଜିବ ଅନ୍ୟ ତିନି ପୁତ୍ରଙ୍କୁ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ ପଣ୍ଡୁଆ ତାଲୁକ ଅଧୀନ "ଅଡ଼ାଙ୍କୁର" ଗ୍ରାମରେ ବସତି ଯୋଗାଇ ଦେଇଥିଲେ । ଅଭିରାମଙ୍କର ପୁତ୍ର ସଦାନନ୍ଦ । ଲେଖକ ଏହି ସଦାନନ୍ଦଙ୍କ ପୁତ୍ର ଅଟନ୍ତି ।

ଲେଖକ ଅତି ଅମାୟିକ ସରଳ ଏବଂ ମିଷ୍ଟଭାଷୀ ଅଟନ୍ତି । ନିଜର କର୍ମତତ୍ପରତା, ନିଷ୍ଠା ଏବଂ ସଦ୍‌ଗୁଣାବଳୀ ତାଙ୍କୁ ଜଣେ ଦକ୍ଷ ଶିକ୍ଷକ ହିସାବରେ ସର୍ବତ୍ର ପୂଜ୍ୟ କରାଇ ପାରିଛି ।

